# CONTENTS

# ନୈତିକତା ଓ ଆଜିର ଗଣମାଧ୍ୟମ

କାଳିକିଙ୍କର

ଆଜିର ଦୁନିଆଁ ପ୍ରତ୍ୟେକ ମଣିଷର ଆଖିର ଆଇନାର ଅନତି ଦୂରରେ । ଘରେ ବସି ପୃଥିବୀକୁ ସୁନ୍ଦର ଭାବରେ ଦେଖି ହେଉଛି ଏବଂ ଅନୁଭବ କରି ହେଉଛି । ଆମେରିକାରେ ପ୍ରବହମାନ ସାଣ୍ଡି ହେଉ କିମ୍ବା ସିରିଆରେ ବିଦ୍ରୋହର ଚିଂଗାରୀ ହେଉ, ଏସବୁ ଜାଣି ହେଉଛି, ବୁଝି ହେଉଛି ଏବଂ ଏହାର ଗତି ପ୍ରଗତି ସବୁର ବିଶ୍ଳେଷଣ ସହଜରେ ହୋଇପାରୁଛି । ସୂଚନା ଅଧିକାର ଆଇନ୍ ହେଉ କିମ୍ବା ଶିକ୍ଷା ଅଧିକାର ଆଇନ୍ ହେଉ କିମ୍ବା ଦେଶ ବିକାଶର କୌଣସି ବିଧେୟକ ହେଉ, ସବୁ କିଛି ଗଣମାଧ୍ୟମ ଆମ ପାଖରେ ପହଞ୍ଚାଇ ଦେଉଛି ।

ଆଖି ପିଛୁଳାକେ ପ୍ରଳୟ/ଆଖି ପିଛୁଳାକେ ସମୟ ଆଖିରେ ଆଖିରେ ପ୍ରତ୍ୟୟ/ଭରିଦିଏ ଆଜିର ସମସ୍ତ ସମାଚାର/ ଏକ ଚମତ୍କାର । ସତରେ କବିଟିଏ କେତେ ସଂବେଦନତାର ସହ ଏହି ଚମତ୍କାର ବିଷୟରେ ଆଙ୍କି ଦେଇଛି କବିତା, କାରଣ ସେ ବୁଝିଛି କେମିତି ଆଜିର ଗଣମାଧ୍ୟମ ମଣିଷ ମଣିଷ ଭିତରର ଦୃଷ୍ଟିଗତ ଦୂରତ୍ୱକୁ କମେଇ ଦେଇଛି । ସେ ଜାଣୁଛି, ଚିହ୍ନୁଛି ପରିବର୍ତ୍ତିତ ସମୟକୁ, ସମାଜକୁ । ଆମାଜନ୍ ନଦୀର ଜଳ ଓ ତୀର ଉପକୂଳର ଘଂଚ ବଣ ଭିତରେ ବିଭିନ୍ନ ଜୀବଜନ୍ତୁ, ପକ୍ଷୀ, ସରୀସୃପ ଯେଉଁ ଲୀଳା ଖେଳା ରଚନା କରନ୍ତି କିମ୍ବା ପ୍ରଶାନ୍ତ ମହାସାଗରର ଗଭୀରତା ଭିତରେ କେମିତି କେତେ କେତେ ବିଚିତ୍ର ଜଳଚର ପ୍ରାଣୀ ନିବାସ କରୁଛନ୍ତି ଅନାଦି ଅନନ୍ତ କାଳରୁ, ତାହାର ହିସାବ ମଣିଷ ରଖି ନଥିଲେ ମଧ୍ୟ ଗଣମାଧ୍ୟମ ସାହାଯ୍ୟରେ ସେ ତା'ସହ ପରିଚିତ ହେଉଛି । ବିଶ୍ୱର କେଉଁ ପ୍ରୟୋଗଶାଳାରେ ମଣିଷ ନିଜେ ମଣିଷ ପାଇଁ ମଣିଷ ସମାଜ ପାଇଁ ମାରଣାସ୍ତ୍ର ନିର୍ମାଣ କରୁଛି, ପୁଣି କେଉଁ ପ୍ରୟୋଗଶାଳାରେ ମଣିଷ ଜୀବନର ସୁରକ୍ଷାର ଉପାୟମାନ ଖୋଜିବାରେ ଲାଗିଛି, ଏସବୁ ଆମେ ଏହି ଶତାବ୍ଦୀମାନଙ୍କରେ ସହଜରେ ଜାଣି ପାରୁଛୁ । ଡୁନ୍ କିମ୍ବା ହାର୍ବାଡ଼ ସ୍କୁଲ ଅଥବା କେଂବ୍ରୀଜ ବିଶ୍ୱବିଦ୍ୟାଳୟର କେଉଁ ଶ୍ରେଣୀ ଗୃହରେ ଜଣେ ବିଶିଷ୍ଟ ଶିକ୍ଷକ କଣ ପରିବେଷଣ କରୁଛନ୍ତି, ତାହା ମଧ୍ୟ ଏହି ଗଣମାଧ୍ୟମ ନିମିଷକ ମଧ୍ୟରେ ଆମ ସମ୍ମୁଖରେ ପହଞ୍ଚାଇ ଦେଉଛି ।

"Mass communication is the capacity in capability." ଏଣୁ ସାଂପ୍ରତିକ ପୃଥିବୀର ମାନସପଟରେ ଯେଉଁ ବିବର୍ତ୍ତନ/ପରିବର୍ତ୍ତନ ଚାଲିଛି, ତାହା ଏହି ଗଣମାଧ୍ୟମ ଦ୍ୱାରା ପରୀକ୍ଷିତ ହେଉଛି । ଆମେରିକାର ସ୍ୱାଧୀନତା ସଂଗ୍ରାମ ହେଉ କିମ୍ବା ଫରାସୀ ରାଷ୍ଟ୍ରବିପ୍ଳବ ହେଉ ଅଥବା ଭାରତର ସ୍ୱାଧୀନତା ଆନ୍ଦୋଳନ ହେଉ ଏସବୁ ସେତେବେଳେ ଯେମିତି ଇତିହାସର ପୃଷ୍ଠା ମଣ୍ଡନ କରିବାକୁ ଯଥେଷ୍ଟ ପ୍ରତୀକ୍ଷା କରିବାକୁ ପଡ଼ିଥିଲା । ତାହା ଆଜିର ସମୟରେ ନିହାତି ଅପ୍ରାସଙ୍ଗିକ । ଦେଶ ଓ ସମଗ୍ର ପୃଥିବୀରେ ଆଜି ଏକ ନୂଆ ସମୟ ଓ ସଭ୍ୟତାର ଉଦ୍ରେକ ଦେଖିବାକୁ ମିଳୁଛି ଏବଂ ତାହା କେବଳ ଏହି ଗଣମାଧ୍ୟମର ନିକିତିରେ ତଉଲା ହୋଇ ଥୁଆ ହେଉଛି । ବିଶ୍ୱ ପରିବେଶ ଓ ପରିସ୍ଥିତି ଆଜି ଅନେକାଂଶରେ ଏହି ଗଣମାଧ୍ୟମ ଦ୍ୱାରା ପ୍ରଭାବିତ ହୋଇ ଚାଲିଛି । ଗଣମାଧ୍ୟମ ଆଜି କେବଳ ସଂଦେଶ ବହନ କରୁନାହିଁ, କରୁଛି ପରିବର୍ତ୍ତନର ଆହ୍ୱାନ । ଅଂକୁରିତ କରୁଛି ନୂତନ ଚେତନାର ପରିପ୍ରକାଶ । କିଛି ଭାଂଗୁଛି ଏବଂ କେତେବେଳେ ଗଢୁଛି । ଲୋକମତ, ଜନଚେତନା ଆଜି ଅନେଂକାଶରେ ଏହାଦ୍ୱାରା ପ୍ରଭାବିତ ହେଉଛି । ତେବେ ଏସବୁ ଅନେକ ସମୟରେ କିଛି କଠିନ ସମୟର ସ୍ୱାକ୍ଷର ବହନ କରୁଛି, କିଛି କଠୋରତମ ପରିବେଶର ଜନକ ସାଜୁଛି । ଆପଣାର ମହତ୍ତ୍ୱକୁ ଲାଂଛିତ କରୁଛି, ମଣିଷର ସ୍ୱପ୍ନକୁ ମଧ୍ୟ ବିଦ୍ରୁପ କରୁଛି । ଏକ ଗାଣିତିକ ଜଟିଳତା

ଦେଇ ଅଗ୍ନିପରୀକ୍ଷା ଦେବାକୁ ବାଧ୍ୟ ହେଉଛି । ଆପଣାର ନୈତିକ ଚେତନା ଉପରେ ଅନୈତିକତାର ଆବରଣ ଦେଉଛି । ଆସ୍ଥା ଓ ବିଶ୍ୱାସ ହରାଉଛି, ଯାହା ସାଂପ୍ରତିକ ସମାଜରେ ଏକ ଆଲୋଡ଼ନ ସୃଷ୍ଟି କରିସାରିଲାଣି । ଲୋକେ ଆଜି ସହଜରେ ଏହି ଗଣମାଧ୍ୟମ ଦ୍ୱାରା ପରିବେଷିତ ତଥ୍ୟକୁ ଗ୍ରହଣ କରି ପାରୁ ନାହାନ୍ତି । ଅନେକେ କେବଳ କିଛି ବିଶେଷ ଦଳ କିମ୍ବା ଗୋଷ୍ଠୀ ଓ ବ୍ୟକ୍ତିବିଶେଷର ମୁଖଟା ସାଜି ଛିଡ଼ା ହେଉଛି ।

ଏ ଡାଳରୁ ସେ ଡାଳକୁ ଆଶ୍ରା କରିଥିବା ବିଚରା ନିରପରାଧ ଜୀବଟି ତଳେ ପଡ଼ିଲା, ତେବେ ସେ ପୁଣି ଡାଳଟିକୁ ଅତି ସାବଧାନରେ ସଂତର୍ପଣରେ ଧରି ଆଗକୁ ଯିବାକୁ ଚେଷ୍ଟା କଲାବେଳକୁ ପୁଣି ତଳେ ପଡ଼ିଲା, ଏଥର କିନ୍ତୁ ସେ ଆଖି ବନ୍ଦ କରିଥିଲା । କବିଟିଏ ଆଜି ଗଣମାଧ୍ୟମର ବିଶ୍ୱସନୀୟତା ଉପରେ ଠିକ୍ ଏମିତି କିଛି ସଂଶୟ ଜାହିର କରୁଛି । ଇଲେକ୍ଟ୍ରୋନିକ୍ସ ମିଡ଼ିଆ ହେଉ କିମ୍ବା ପ୍ରିଣ୍ଟ୍ ମିଡ଼ିଆ, ଆଜି ସବୁଠି ଗହ ଗହ ନାଦ । ଆଖି ଖୋଲିଲେ ଖବର, ଆଖି ବନ୍ଦ କଲେ ମଧ୍ୟ ଖବର । ଖବର କିନ୍ତୁ ଆମ ଚାରିପାଖରେ । ପିଲାଟିଏ ଖବର ପଢୁଥିଲାବେଳେ କିମ୍ବା ଶୁଣୁଥିଲାବେଳେ ଆପଣାର ବିଜ୍ଞ ବାପା ଓ ମାଆଙ୍କୁ ପଚାରୁଛି ବାପା କେଉଁ ଖବରଟି ସତ ଯେ ? କେଉଁ ବ୍ୟକ୍ତି ଭଲ, କେଉଁ ବ୍ୟକ୍ତି ଭଲ ନୁହେଁ ? ପୁଣି କିଏ ସତିଆ ଆଉ କିଏ ମିଛୁଆ । ସମସ୍ତେ କିନ୍ତୁ କହୁଛନ୍ତି ଆପଣାକୁ ସତିଆ । ତେବେ ଏତେ ଗହ ଗହ କାହିଁକି ? ଈଶ୍ୱର ଯଦି ସତ୍ୟ ଏବଂ ଏକ ତେବେ ଏତେ ବିଭେଦ ବୈଚିତ୍ର୍ୟ କାହିଁକି ? ସମସ୍ତ ଗଣମାଧ୍ୟମ ଯଦି ସମାଜର ନିଛକ ସତ କଥାର ଆଇନା ତେବେ ଏତେ ଅସ୍ପଷ୍ଟ କାହିଁକି ଚିତ୍ର । ଭଙ୍ଗା ଦର୍ପଣ ପରି ବହୁ ଚିତ୍ର ବ୍ୟସ୍ତ ବିବ୍ରତ ଭାବରେ କାହିଁକି ଆଜି ଦେଖାଯାଉଛି ? ଶ୍ରେଣୀ ଗୃହରେ ଗଣିତ ମୋତେ ଯେମିତି କଷ୍ଟ ଲାଗେ ତାଠାରୁ ଏସବୁ ଗଣିତ ଅଧିକ ଜଟିଳ ଲାଗୁଛି । ତେବେ ସେସବୁ ଗଣିତର ଏକ ନିର୍ଦ୍ଦିଷ୍ଟ ଉତ୍ତର ଥାଏ କିନ୍ତୁ ଏ ସବୁର ଉତ୍ତର ମିଳିବା ଅତ୍ୟନ୍ତ ଅସହଜ ।

ଗଣତନ୍ତ୍ରର ଚତୁର୍ଥ ମହାସ୍ତମ୍ଭର ଆଖ୍ୟା ବହନ କରିଥିବା ଏହି ଗଣମାଧ୍ୟମ ଆଜି ଅନେକାଂଶରେ ନୈତିକତା ହରେଇ ବ୍ୟବସାୟୀକରଣ ହୋଇଯାଉଛି । ଏଥିପାଇଁ ପ୍ରମୁଖ କାରଣକୁ ନିମ୍ନମତେ ଅନୁଧ୍ୟାନ କରିହେବ ।

(୧)ଗୁଣାତ୍ମକ ଶିକ୍ଷାର ଅଭାବ (୨)ସାଂବାଦିକତାର ସାର୍ଥକ ଓ ମୂଲ୍ୟମୟ ପାଠ୍ୟକ୍ରମର ଅଭାବ । (୩)ସାମ୍ବାଦିକମାନଙ୍କର ବାସ୍ତବ ପ୍ରଶିକ୍ଷଣରେ ତ୍ରୁଟି । (୪) ଶସ୍ତା ଲୋକପ୍ରିୟତାର ଲୋଭ (୫) ଅଧିକ ଉପାର୍ଜନର ଲୋଭ (୬)ଦୁର୍ବଳ ବ୍ୟକ୍ତିତ୍ୱଗତ ଗୁଣ (୭) ସାଂପ୍ରତିକ ସମାଜ ବ୍ୟବସ୍ଥାର ପ୍ରଭାବ ଓ ଅସହାୟତା (୮) ସରକାରୀ କିମ୍ବା ବେସରକାରୀ ସ୍ତରରେ ଅହେତୁକ ପ୍ରଭାବ (୯) ସାର୍ଥକ ନିୟମ, ନୀତି ଓ ନିୟନ୍ତ୍ରଣର ଅଭାବ ଇତ୍ୟାଦି ।

ତେବେ ଏସବୁ ପରିସ୍ଥିତିରେ ଗଣମାଧ୍ୟମର ନୈତିକତା କେମିତି ଫେରି ଆସିବ, ସେ ବିଷୟରେ ମଧ୍ୟ ସବିଶେଷ ବିଚାର ମନ୍ଥନ ହେବା ଦରକାର । ଗଣମାଧ୍ୟମର ଦୁର୍ବଳ ସମାଜ ଓ ସଭ୍ୟତାକୁ ମଧ୍ୟ ପ୍ରଭାବିତ କରିବ, ଏଥିରେ ସନ୍ଦେହ ନାହିଁ । ଆଜି ଯେମିତି ରାଜନୈତିକ ନେତା ହୁଅନ୍ତୁ କିମ୍ବା ସାମାଜିକ କାର୍ଯ୍ୟକର୍ତ୍ତା ହୁଅନ୍ତୁ, ସମସ୍ତେ ଧୀରେ ଧୀରେ ଆପଣାର ଅସ୍ତିତ୍ୱ ଉପରେ ପ୍ରଶ୍ନଚିହ୍ନ ଲଗାଇ ଚାଲିଛନ୍ତି । ଆନ୍ନା ହଜାରେଙ୍କର ଆନ୍ଦୋଳନ ହେଉ କିମ୍ବା ଅରବିନ୍ଦ କେଜ୍ରୀୟାଲଂକର ରାଜନୀତି ହେଉ, ବେଳେବେଳେ ଯେଉଁ ଆଶାର ସଂଚାର ଏମାନେ କରିଥାନ୍ତି, ସେ ଆଶା କିନ୍ତୁ କିଛିଦିନ ପରେ କେଉଁଠି କେମିତି ମଳିନ ପଡ଼ିଯାଉଛି । ଯେଉଁ ଅନ୍ଧାର ଭିତରୁ ଆଲୋକର ସନ୍ଦେଶ ସେମାନେ ଦେବାକୁ ଚେଷ୍ଟା କରିଥିଲେ ନିଜେ ସେହି ଅନ୍ଧାରରୁ ନିଜକୁ ଦୂରେଇ ନ ପାରିବାର ଆଭାସ ମିଳୁଛି । ଗଣମାଧ୍ୟମ କେତେବେଳେ କାହାକୁ କହୁଛି ଅସୁର ପୁଣି କେତେବେଳେ ସେହି ଅସୁରକୁ ଦେବତା । ଏମିତି ସ୍ଥଳେ ଏକବିଂଶ ଶତାବ୍ଦୀର ଗଣମାଧ୍ୟମ ଯେ କେତେ ସାର୍ଥକ ସମର୍ଥନ ପାଇପାରିବ, ତାହା ହୁଏତ ସମୟ ବିଚାର କରିବ ।

ଅଧ୍ୟକ୍ଷ, ଟାଇମସ୍ ସ୍କୁଲର ଗୁରୁକୁଳ,
ଦଣ୍ଡିପୁର, ବଳଂଗା-୭୫୨୧୦୫, ପୁରୀ



# ସାମ୍ବାଦିକତାର ନୂତନ ପରିଭାଷା

ଡକ୍ଟର ପ୍ରଦୀପ ମହାପାତ୍ର

ପ୍ରତିବର୍ଷ ନଭେମ୍ବର ୧୬ ତାରିଖକୁ ଆମେ 'ଜାତୀୟ ପ୍ରେସ ଦିବସ'ରୂପେ ପାଳନ କରିଥାଉ । ୧୬ ନଭେମ୍ବର ୧୯୬୬ ମସିହାରେ ଭାରତୀୟ ପ୍ରେସ କାଉନସିଲ ଗଠିତ ହୋଇଥିଲା । ପ୍ରେସର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବା ତଥା ଭାରତୀୟ ସଂବାଦପତ୍ର ଓ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକର ମାନ ଉନ୍ନୟନ ଲାଗି ଉଦ୍ୟମ କାଉନସିଲର ଦୁଇ ମୁଖ୍ୟ ଉଦ୍ଦେଶ୍ୟ ରୂପେ ଘୋଷିତ ହୋଇଛି । କାଉନସିଲ ପ୍ରତିଷ୍ଠାର ୩୦ତମ ବାର୍ଷିକୀ ପାଳନ ଅବସରରେ ତତ୍‌କାଳୀନ ଭାରତର ରାଷ୍ଟ୍ରପତି ଡକ୍ଟର ଶଙ୍କର ଦୟାଲ ଶର୍ମା ଏହାର ପ୍ରତିଷ୍ଠା ଦିବସକୁ 'ଜାତୀୟ ପ୍ରେସ ଦିବସ' ରୂପେ ପାଳନ କରିବା ନିମନ୍ତେ ପ୍ରସ୍ତାବ ଦେଇଥିଲେ । ୧୯୯୭ ମସିହା ପରଠାରୁ କ୍ରମାଗତ ଭାବେ 'ଜାତୀୟ ପ୍ରେସ ଦିବସ' ପାଳିତ ହୋଇଆସୁଛି ।

ଭାରତୀୟ ପ୍ରେସ କାଉନସିଲ ମୂଳତଃ ୧୯୬୬ ଓ ୧୯୭୮ରେ ପ୍ରଣୀତ ପ୍ରେସ କାଉନସିଲ ଅଫ୍ ଇଣ୍ଡିଆ ଆକ୍ଟକୁ ଆଧାର କରି କାର୍ଯ୍ୟ କରିଥାଏ । ଏହି ଆଇନ ଅନୁଯାୟୀ ପ୍ରେସର ଅର୍ଥ ସମ୍ବାଦପତ୍ର, ପତ୍ରପତ୍ରିକା ଓ ସଂବାଦ ସରବରାହ ସଂସ୍ଥା ମଧ୍ୟରେ ଆବଦ୍ଧ ରହିଆସିଛି । ୧୯୭୮ ମସିହା ସୁଦ୍ଧା ସାଂବାଦିକତା କହିଲେ ମୁଦ୍ରଣ ଗଣମାଧ୍ୟମକୁ ହିଁ ବୁଝାଉଥିଲା । ୧୯୮୦ ମସିହା ବେଳକୁ ସରକାରୀ କର୍ତ୍ତୃତ୍ୱାଧୀନ ଦୂରଦର୍ଶନ ଓ ୧୯୯୨ ମସିହାରେ ଘରୋଇ ଉପଗ୍ରହ ଚ୍ୟାନେଲଗୁଡ଼ିକରେ ଟେଲିଭିଜନ ସାମ୍ବାଦିକତା ଆରମ୍ଭ ହେଲା । ଏ ଯାଏଁ ଆମ ଦେଶରେ ରେଡ଼ିଓ ସାମ୍ବାଦିକତା କେବଳ ସରକାରୀ ନିୟନ୍ତ୍ରିତ ଆକାଶବାଣୀ ହାତରେ ସୀମିତ ରହିଆସିଛି । ବିଗତ ଦଶକରେ ମୂଳତଃ ଦକ୍ଷିଣ ଭାରତ ଉପକୂଳରେ ସୁନାମି ପରଠାରୁ ଆମ ଦେଶରେ ଇଣ୍ଟରନେଟ ସାଂବାଦିକତାର ମୂଳଦୁଆ ପଡ଼ିଲା ।

ସମକାଳୀନ ସାମାଜିକଧାରା ନିୟନ୍ତ୍ରଣରେ ସମ୍ବାଦପତ୍ର ତଥା ଅନ୍ୟାନ୍ୟ ଗଣମାଧ୍ୟମ ପ୍ରମୁଖ ଭୂମିକା ନିର୍ବାହ କରିଆସୁଛନ୍ତି । ତେବେ ସାମ୍ବାଦିକତାର ଗତି ପ୍ରକୃତି ସଂପର୍କରେ ସର୍ବସାଧାରଣରେ ଆଲୋଚନାଲାଗି ମଞ୍ଚର ଅଭାବ ଅନୁଭୂତ ହେଉଛି । ବିଦେଶରେ ଗଣମାଧ୍ୟମର କାର୍ଯ୍ୟକାରିତାକୁ ଅନୁଧ୍ୟାନ କରିବା ପାଇଁ 'ମିଡ଼ିଆ ୱାଚ ଡଗ' ଶ୍ରେଣୀର ସଂସ୍ଥାମାନ କାର୍ଯ୍ୟ କରୁଥିବାବେଳେ ଭାରତରେ ଅନୁରୂପ ଉଦ୍ୟମ କ୍ୱଚିତ ହୁଏ । ଆମ ରାଜ୍ୟରେ ସମ୍ବାଦପତ୍ର ଓ ପତ୍ରପତ୍ରିକାଗୁଡ଼ିକର ପୃଷ୍ଠାରେ ସାମ୍ବାଦିକତା ସଂପର୍କରେ ସମୀକ୍ଷା କରିବା ପାଇଁ କୌଣସି ନିୟମିତ ପ୍ରୟାସ ମଧ୍ୟ ଦେଖିବାକୁ ମିଳେ ନାହିଁ ।

ସାମ୍ବାଦିକତା ମୂଳରୁ ହିଁ ବିବଦମାନ ଇତିହାସ ସୃଷ୍ଟି କରିଆସିଛି । ପଞ୍ଚଦଶ ଶତାବ୍ଦୀ ମଧ୍ୟଭାଗରେ ଜର୍ମାନରେ ଛାପାକଳ ଉଦ୍ଭାବିତ ହେବାପରେ ଦଶରୁ କୋଡ଼ିଏ ବର୍ଷ ମଧ୍ୟରେ ୟୁରୋପ ଓ ବ୍ରିଟେନକୁ ଏହି କାରିଗରୀ କୌଶଳ ସଂପ୍ରସାରିତ ହୋଇଥିଲା । ଛାପାଯନ୍ତ୍ର ଦ୍ୱାରା କାଗଜରେ ଅଳ୍ପ ସମୟ ମଧ୍ୟରେ ଅଧିକ ସଂଖ୍ୟାରେ ଲେଖା ମୁଦ୍ରଣ ସମ୍ଭବପର ହେବା ପରବର୍ତ୍ତୀ ଦେଢ଼ଶହ ବର୍ଷ ପରେ ୟୁରୋପ ଓ ବ୍ରିଟେନରେ ଗୋଟିଏ ଗୋଟିଏ ଘଟଣାର ସୁବିସ୍ତୃତ ବିବରଣୀକୁ ନେଇ ସମ୍ବାଦ ପୁସ୍ତିକା ବା 'ନିଉଜ ବୁକ୍' ମାନ ପ୍ରକାଶିତ ହେଲା । ତାହା ହିଁ ସମ୍ବାଦପତ୍ରର ସର୍ବପୁରାତନ ସଂସ୍କରଣ ।

ବ୍ରିଟେନରେ ୧୬୦୫ ଖ୍ରୀଷ୍ଟାବ୍ଦରେ ଲଣ୍ଡନର ସରକାରୀ ଛାପାକଳର କର୍ମଚାରୀ ନାଥନିଆଲ ବଟର 'ୟାର୍କସାୟରରେ ଦୁଇ ହତ୍ୟାକାଣ୍ଡ' ଶୀର୍ଷକ ଏକ ସମ୍ବାଦପୁସ୍ତିକା ପ୍ରକାଶନ କରିଥିବା ଜଣାଯାଏ । ଡକାୟତି, ହତ୍ୟାକାଣ୍ଡ ତଥା ସେଭଳି ଚାଞ୍ଚଲ୍ୟ ସୃଷ୍ଟିକାରୀ ଘଟଣା ବର୍ଣ୍ଣନାରେ ଋଦ୍ଧିମନ୍ତ ସମ୍ବାଦପୁସ୍ତିକାଗୁଡ଼ିକ ପୃଷ୍ଠାକୁ ରାଜପରିବାର, ସମ୍ଭ୍ରାନ୍ତ ପରିବାର ସଦସ୍ୟମାନଙ୍କ ବ୍ୟକ୍ତିଗତ ଜୀବନ ସଂପର୍କରେ କୁତ୍ସାରଟନା ସଂକ୍ରମିତ ହେବାକୁ ଲାଗିଲା ।

ବ୍ରିଟେନର ସମ୍ବାଦପୁସ୍ତିକାମାନଙ୍କରେ ସ୍ପେନ ରାଜ ପରିବାରର ଚରିତ୍ର ସଂହାରରେ ଅତିଷ୍ଠ ହୋଇ ସ୍ପେନର ରାଷ୍ଟ୍ରଦୂତ ବ୍ରିଟେନ ରାଣୀଙ୍କ ନିକଟରେ ଅଭିଯୋଗ ବାଢ଼ିଥିଲେ । ଫଳସ୍ୱରୂପ ବ୍ରିଟେନରେ ୧୬୩୨ ଖ୍ରୀଷ୍ଟାବ୍ଦରେ ପ୍ରଥମ ଥର ପାଇଁ 'ଷ୍ଟାର ଚେମ୍ବର' ଆଇନ ପ୍ରଣୟନ କରାଯାଇ ୧୬୪୧ ଖ୍ରୀଷ୍ଟାବ୍ଦ ଯାଏଁ ସମ୍ବାଦପୁସ୍ତିକାଗୁଡ଼ିକର ମୁଦ୍ରଣ ଓ ପ୍ରସାରଣ ଉପରେ ଅଙ୍କୁଶ ଲଗାଯାଇଥିଲା ।

ଭାରତରେ ୧୭୮୦ ଖ୍ରୀଷ୍ଟାବ୍ଦରେ ପ୍ରଥମ ମୁଦ୍ରିତ ସମ୍ବାଦପତ୍ର 'ଦି ବେଙ୍ଗଲ ଗେଜେଟ' ବା 'ଦି କାଲକାଟା ଜେନେରାଲ ଏଡ଼ଭାଟାଇଜର' ପ୍ରକାଶନ ବେଳେ ଏହାର ସମ୍ପାଦକ ଓ ପ୍ରକାଶକ ଜେମସ ଅଗଷ୍ଟସ ହିକ୍କି ମଧ୍ୟ ଚାଞ୍ଚଲ୍ୟ ସୃଷ୍ଟିକାରୀ ସମ୍ବାଦ ତଥା ଉଚ୍ଚ ପଦବୀରେ ଅଧିଷ୍ଠିତ ବ୍ୟକ୍ତିବିଶେଷଙ୍କ କୁତ୍ସାରଟନାକୁ ହିଁ ଆଦର୍ଶ ରୂପେ ଗ୍ରହଣ କରିଥିଲେ । ମାନହାନୀ ମକଦ୍ଦମାରେ ଛନ୍ଦି ହୋଇପଡ଼ିଥିବା ହିକ୍କିଙ୍କ ଛାପାକଳ ୧୭୮୨ ଖ୍ରୀଷ୍ଟାବ୍ଦରେ ଜବତ ହେବା ପରେ ଦେଶର ପ୍ରଥମ ସମ୍ବାଦପତ୍ରର ଅକାଳ ମୃତ୍ୟୁ ଘଟିଥିଲା ।

ତେବେ ୧୮୬୬ ଖ୍ରୀଷ୍ଟାବ୍ଦରେ ପ୍ରଥମ ଓଡ଼ିଆ ସାପ୍ତାହିକ ସମ୍ବାଦପତ୍ର 'ଉତ୍କଳ ଦୀପିକା' ପ୍ରକାଶନ ବେଳକୁ ପରିସ୍ଥିତି ବଦଳି ଯାଇଥିଲା । ଦୀର୍ଘ ୭୦ ବର୍ଷର ଯାତ୍ରାରେ 'ଉତ୍କଳ ଦୀପିକା' ନଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ର ଉତ୍‌ଥାପନ କରି ସହାୟତା ଯୋଗାଡ଼ଠାରୁ ଆରମ୍ଭ କରି ଓଡ଼ିଆ ଭାଷାର ସୁରକ୍ଷା, ଓଡ଼ିଆ ଭାଷାଭାଷୀଙ୍କ ଏକତ୍ରୀକରଣ, ବିଟ୍ରିଶ ଶାସନର ବିରୋଧ ତଥା ସାମାଜିକ ଅନ୍ଧବିଶ୍ୱାସ ନିପାତଲାଗି ସ୍ୱର ଉତ୍ତୋଳନ ଭଳି ବହୁ ଜନହିତକର କାର୍ଯ୍ୟକ୍ରମକୁ ଧାର୍ଯ୍ୟ ଲକ୍ଷ୍ୟ ରୂପେ ଗ୍ରହଣ କରିନେଇଥିଲା । ଓଡ଼ିଆ ସାମ୍ବାଦିକତାର ଶୈଶବ ଅବସ୍ଥାରେ 'ଉତ୍କଳ ଦୀପିକା' ଗୁରୁଦାୟିତ୍ୱ ବହନ କରି ଏହି ସମୟ ସୀମାରେ ପ୍ରକାଶିତ ବହୁ ଓଡ଼ିଆ ପତ୍ରପତ୍ରିକାର ପ୍ରଯୋଜନା ଓ ସଂପାଦକୀୟ ଧାରାକୁ ପ୍ରଭାବିତ କରିଥିଲା । ଏହି ସାଧୁ ଉଦ୍ୟମ ଓଡ଼ିଆ ସାମ୍ବାଦିକତାର ସାପ୍ତାହିକ ଯୁଗକୁ ଉଚିତ ଦିଗ୍‌ଦର୍ଶନ ଦେଇଥିଲା ।

ବିଶ୍ୱବ୍ୟାପୀ ଗଣତାନ୍ତ୍ରିକ ବ୍ୟବସ୍ଥାର ଅଭ୍ୟୁଥାନରେ ସମ୍ବାଦପତ୍ର ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରିଛି । ଭାରତର ସ୍ୱାଧୀନତା ସଂଗ୍ରାମ, ଚୀନ ଓ ରୁଷ ବିପ୍ଳବରେ ସମ୍ବାଦପତ୍ର ରାଜନୀତିକ ମତବାଦ ପ୍ରଚାରର ଶକ୍ତିଶାଳୀ ମାଧ୍ୟମ ରୂପେ ପରୀକ୍ଷିତ ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଅବସ୍ଥାରେ ଜାତିସଂଘର ପ୍ରତିଷ୍ଠାପରେ ସମ୍ବାଦପତ୍ର ସହ ଅନ୍ୟାନ୍ୟ ଗଣମାଧ୍ୟମକୁ ଶିକ୍ଷା, ସ୍ୱାସ୍ଥ୍ୟ, ଅର୍ଥନୀତି, ସାମାଜିକ ତଥା ସାଂସ୍କୃତିକ ଅଭିବୃଦ୍ଧି ନିମନ୍ତେ ଉପଯୋଗ କରାଯିବା ଦିଗରେ ଗୁରୁତ୍ୱାରୋପ କରାଗଲା । ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏ କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା ଆୟୋଜିତ ହୋଇଛି । ଆଜି ସମ୍ବାଦପତ୍ର ଓ ଗଣମାଧ୍ୟମର ସାମାଜିକ ଦାୟବଦ୍ଧତା ମାନବସଭ୍ୟତାର ବିକାଶକଳ୍ପେ ଅପରିହାର୍ଯ୍ୟ ବୋଲି ପ୍ରମାଣିତ ହୋଇପାରିଛି ।

ତେବେ ବିଶ୍ୱବ୍ୟାପୀ ସାମ୍ବାଦିକତା ତାହାର ଆଦିମ ସତ୍ତାକୁ ଭୁଲିପାରି ନାହିଁ । ଚାଞ୍ଚଲ୍ୟ ସୃଷ୍ଟି ପାଇଁ ଲଣ୍ଡନରୁ ଭୁବନେଶ୍ୱର ଯାଏଁ ସମ୍ବାଦପତ୍ର, ଟେଲିଭିଜନ ଚ୍ୟାନେଲ, ଇଣ୍ଟରନେଟ ୱେବପେଜର ଲମ୍ବାଧାଡ଼ି ଲାଗିଛି । ଗଣତାନ୍ତ୍ରିକ ପ୍ରକ୍ରିୟାରେ ଗଣମାଧ୍ୟମରେ ମୁକ୍ତ ମତବ୍ୟକ୍ତ ସ୍ୱାଧୀନତାର ଦୁରୁପଯୋଗ ସମକାଳୀନ ସାମାଜିକ ପରିଧିରେ ଏକ ମୁଖ୍ୟ ସମସ୍ୟା ରୂପେ ମୁଣ୍ଡଟେକି ଛିଡ଼ା ହେଲାଣି । ବିକଶିତ ରାଷ୍ଟ୍ରଗୁଡ଼ିକରେ ଉନ୍ନତ ନ୍ୟାୟ ପ୍ରଦାନ ବ୍ୟବସ୍ଥା ତଥା ଗଣମାଧ୍ୟମକେନ୍ଦ୍ରୀକ ବୃତ୍ତିଗତ ଅନୁଷ୍ଠାନଗୁଡ଼ିକ ସେଠାରେ ଅନୁଚିତ ସାମ୍ବାଦିକତାକୁ ଆକଟ କରୁଛନ୍ତି । କିନ୍ତୁ ଆମ ଦେଶ ବା ରାଜ୍ୟରେ ସେଭଳି ସୁବିଧାସୁଯୋଗର ଅଭାବ ରହିଛି । ଏହି ପରିପ୍ରେକ୍ଷୀରେ ଆଗ୍ରହୀ ନାଗରିକଙ୍କୁ ସାମ୍ବାଦିକତାର ଗତି ପ୍ରକୃତି ସଂପର୍କରେ ସଚେତନ କରାଇବାର ସମୟ ଆସି ପହଞ୍ଚିଲାଣି । ରୁଚିପୂର୍ଣ୍ଣ ଓ ଅରୁଚିକର ସମ୍ବାଦ ସଂପର୍କରେ ସାଧାରଣ କ୍ଷେତ୍ରରେ ଚର୍ଚ୍ଚା ମାର୍ଜିତ ସାମ୍ବାଦିକତା ପ୍ରସାର ଦିଗରେ ସହାୟକ ହେବ । ଏହାକୁ 'ଗଣମାଧ୍ୟମ ସାକ୍ଷରତା' କୁହାଯାଏ ।

ପରିବର୍ତ୍ତିତ ପରିସ୍ଥିତିରେ 'ପ୍ରେସ' କହିଲେ ସମ୍ବାଦପତ୍ର, ପତ୍ରପତ୍ରିକା, ରେଡ଼ିଓ, ଟେଲିଭିଜନ, ଚଳଚିତ୍ରଠାରୁ ଆରମ୍ଭ କରି ଇଣ୍ଟରନେଟଭିତ୍ତିକ ସୋସିଆଲ ନେଟ୍‌ୱାର୍କ ସାଇଟଗୁଡ଼ିକୁ ମଧ୍ୟ ବୁଝାଇଲାଣି । ଅତୀତରେ ସାମ୍ବାଦିକ ଓ ସମ୍ପାଦକମାନଙ୍କ ଦ୍ୱାରା ପ୍ରସ୍ତୁତ ସମ୍ବାଦ ଓ ଅଭିମତ 'ପ୍ରେସ' ଯୋଗେ ବୃହତ୍ତ ପାଠକ ଓ ଦର୍ଶକ ଗୋଷ୍ଠୀଙ୍କଠାରେ ପହୁଞ୍ଚାଇବା ବ୍ୟବସ୍ଥା ପ୍ରଚଳିତ ଥିବାବେଳେ ଆଜି ସୋସିଆଲ ନେଟୱାର୍କସାଇଟ ମାଧ୍ୟମରେ ଏକ କ୍ରମବର୍ଦ୍ଧମାନଶୀଳ ପାଠକ ଓ ଦର୍ଶକଗୋଷ୍ଠୀଙ୍କ ମଧ୍ୟରେ ପରସ୍ପର ସମ୍ବାଦ ଓ ଭାବର ଆଦାନପ୍ରଦାନ ସମ୍ଭବପର ହୋଇପାରିଛି । ମୌଳିକ ଗଣମାଧ୍ୟମଗୁଡ଼ିକ ସ୍ଥଳ ବିଶେଷରେ ସୋସିଆଲ ନେଟୱାର୍କ ସାଇଟ ଉପରେ ନିର୍ଭରଶୀଳ ହୋଇ ପଡ଼ୁଛନ୍ତି । ଫଳରେ 'ପ୍ରେସ'ର ସଂଜ୍ଞା କ୍ରମଶଃ ବଦଳିବାରେ ଲାଗିଛି ।

ଉଦାହରଣ ସ୍ୱରୂପ ଗତ ୨୦୧୨ ଏପ୍ରିଲ ଶେଷ ସପ୍ତାହର ଘଟଣାଟିଏ ବିଚାରକୁ ନିଆଯାଉ । ଚୀନର ପୂର୍ବାଞ୍ଚଳରେ ୪୦

ବର୍ଷ ବୟସ୍କ ଚେନ ଗୁଆଙ୍ଗ ନାମକ ଜଣେ ଦୃଷ୍ଟିହୀନ ଓକିଲ ଗତ ଦେଢ଼ବର୍ଷ ଧରି ଅଘୋଷିତ ଗୃହବନ୍ଦୀଭାବେ ଜୀବନ ବିତାଉଥିଲେ । ଦେଶରେ ଏକ ସନ୍ତାନ ନୀତି କାର୍ଯ୍ୟକାରୀ କରିବାବେଳେ ଜବରଦସ୍ତ ଗର୍ଭପାତ ବିରୁଦ୍ଧରେ ଜନମତ ଜାଗ୍ରତକରି ଚେନ ସରକାରୀ ରୋଷର ଶୀକାର ହୋଇଥିଲେ । ସାଦା ପୋଷାକଧାରୀ ପୋଲିସ ତାଙ୍କୁ ମାଡ଼ ମାରୁଥିଲେ ତଥା ପରିବାରବର୍ଗଙ୍କୁ ହଇରାଣ ହରକତ କରୁଥିଲେ । ତେବେ ନିଜ ସମର୍ଥକମାନଙ୍କ ସହାୟତାରେ ସେ ହଠାତ୍ ଅନ୍ତର୍ଦ୍ଧାନ ହୋଇ ଚୀନ ପ୍ରିମିୟର ଓ୍ୱେନ ଜିଆବୋଙ୍କ ଉଦ୍ଦେଶ୍ୟରେ ଇଣ୍ଟରନେଟରେ ଏକ ଭିଡ଼ିଓ ପୋଷ୍ଟ କରିଥିଲେ । ସେଥିରେ ସେ ନିଜ ନିର୍ଯ୍ୟାତନାର ବିବରଣୀ ଉପସ୍ଥାପନ ସହ ଘରେ ଛାଡ଼ି ଆସିଥିବା ପତ୍ନୀ ଓ ପୁତ୍ରର ସୁରକ୍ଷା ଲାଗି ନିବେଦନ କରିଥିଲେ । ଚୀନରେ ଅବାଧ ଇଣ୍ଟରନେଟ ବ୍ୟବହାର ଲାଗି କଟକଣା ବଳବତ୍ତର ଥିବା ସତ୍ତ୍ୱେ ଚେନ ଗୁଆଙ୍ଗ ନିଜ ଅନୁଭୂତି ବିଶ୍ୱବ୍ୟାପୀ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରିବାରେ ସମ୍ଭବପର ହୋଇପାରିଥିଲେ । ଦେଶ ବିଦେଶରେ ଗଣମାଧ୍ୟମ ଏହି ଭିଡ଼ିଓ ଓ ବିବରଣୀ ପ୍ରସାର କରିଥିଲେ ଏବଂ ଏହା ଏକ ଆନ୍ତର୍ଜାତିକ ପ୍ରସଙ୍ଗରେ ରୂପାନ୍ତରିତ ହୋଇଥିଲା । ଏହି ଘଟଣାରୁ ସମକାଳୀନ ପ୍ରେସ ଓ ସୋସିଆଲ ନେଟୱାର୍କ ସାଇଟଗୁଡ଼ିକର ସମିଶ୍ରଣ ବା 'କନଭରଜେନ୍ସ' ସଂପର୍କରେ ସମ୍ୟକ୍ ଧାରଣା ପାଇ ହୁଏ ।

ତଥାପି ପ୍ରେସର ପରିସୀମା ସାମ୍ବାଦିକତାବୃତ୍ତିଧାରୀଙ୍କ ଦ୍ୱାରା ପ୍ରଯୋଜିତ ସମ୍ବାଦ ସରବରାହ ବ୍ୟବସ୍ଥା ମଧ୍ୟରେ ସୀମିତ ରଖିବାକୁ ପଡ଼ିଥାଏ । ସମ୍ବାଦପତ୍ର, ପତ୍ରପତ୍ରିକା, ରେଡ଼ିଓ, ଟେଲିଭିଜନ, ଚଳଚିତ୍ର ପ୍ରକାଶନ ଓ ପ୍ରଦର୍ଶନ ଲାଗି ବିଧିବଦ୍ଧ ସରକାରୀ ନିୟମକାନୁନ ରହିଛି । ତେବେ ଆମ ଦେଶରେ ପ୍ରେସ ସ୍ୱାଧୀନତା ପାଇଁ ସ୍ୱତନ୍ତ୍ର ଆଇନ ନାହିଁ । ଜଣେ ସାଧାରଣ ନାଗରିକର ସମ୍ବିଧାନର ୧୯(୧) ଧାରା ଅନୁଯାୟୀ ମୁକ୍ତ ମତ ପ୍ରକାଶନର ଅଧିକାର ରହିଛି । ପ୍ରେସ୍‌ରେ ସଂଶ୍ଳିଷ୍ଟ ସମସ୍ତ ସାମ୍ବାଦିକ ସାଧାରଣ ସ୍ତରରେ ପ୍ରଦତ୍ତ ମୁକ୍ତମତ ପ୍ରକାଶନର ଅଧିକାର ନିଜ ନିଜ ବୃତ୍ତିଗତ କାର୍ଯ୍ୟ କ୍ଷେତ୍ରରେ ଉପଯୋଗ କରିଥାନ୍ତି ।

ଆନ୍ତର୍ଜାତିକ ସ୍ତରରେ ସରକାରୀ ଆଇନ୍‌କାନୁନ୍ ପ୍ରେସ ସ୍ୱାଧୀନତାର ମୁଖ୍ୟ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହୋଇଥାଏ । ତେବେ ନିର୍ଦ୍ଦିଷ୍ଟ ରାଷ୍ଟ୍ରରେ ଜନସାଧାରଣ ପ୍ରେସ ବ୍ୟବହାର କରିବା ପାଇଁ ପାଉଥିବା ସୁବିଧାସୁଯୋଗ, ପ୍ରେସଦ୍ୱାରା ଜନସାଧାରଣଙ୍କ ଅଭାବ ଅଭିଯୋଗର ସମାଧାନ ତଥା ପ୍ରେସ ମାଧ୍ୟମରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଅର୍ଥନୀତି ଇତ୍ୟାଦିର ମାନ ଉନ୍ନୟନ ମଧ୍ୟ ପ୍ରେସ ସ୍ୱାଧୀନତାର ପରିମାପକ ରୂପେ ବିଚାରକୁ ନିଆଯାଇଥାଏ । ଗତ ଶତାବ୍ଦୀର ଷଷ୍ଠ ଦଶକରେ ଆନ୍ତର୍ଜାତିକ ସ୍ତରରେ ପ୍ରେସ ସ୍ୱାଧୀନତା ସଂପର୍କରେ ବିଧିବଦ୍ଧ ଅଧ୍ୟୟନ ଆରମ୍ଭ ହୋଇଥିଲା । ରାଷ୍ଟ୍ରୀୟ ଆୟ, ସାକ୍ଷରତା ଓ ଦୈନିକ ସମ୍ବାଦପତ୍ର ପ୍ରସାରକୁ ଆୟୁଧକରି ପ୍ରେସ ସ୍ୱାଧୀନତାର ମାନାଙ୍କ ନିର୍ଦ୍ଧାରଣ କରାଯାଇଥିଲା । ସପ୍ତମ ଦର୍ଶକରେ ପ୍ରେସ ସ୍ୱାଧୀନତା ମୂଲ୍ୟାୟନ ପାଇଁ ଆଇନର ବନ୍ଧନୀର ଭିତରୁ ଓ ବାହାରୁ ଚାପ, ମାଲିକାନା, ନିଜସ୍ୱ ଯାଞ୍ଚ ବ୍ୟବସ୍ଥା ଓ ଆର୍ଥିକସ୍ଥିତି ଇତ୍ୟାଦିକୁ ନେଇ ପ୍ରେସ ସ୍ୱାଧୀନତା ବିଚାର କରାଗଲା । କ୍ରମଶଃ ପ୍ରେସ ସ୍ୱାଧୀନତା ଗବେଷଣା ଲାଗି ଅଧିକରୁ ଅଧିକ ବାହ୍ୟଚାପ ଚିହ୍ନିତ ହେବାରେ ଲାଗିଲା । ପ୍ରେସ ସ୍ୱାଧୀନତା କହିଲେ କେବଳ ସମ୍ବାଦ ସରବରାହ ସଂସ୍ଥାଗୁଡ଼ିକ ଉପରେ ଅଂକୁଶକୁ ନ ବୁଝି ସମାଜର ବୃହତ୍ତର ବିକାଶ କ୍ଷେତ୍ରରେ ପ୍ରେସର ଭୂମିକାକୁ ଏଣିକି ବିଚାରକୁ ନିଆଯାଉଛି ।

ବର୍ତ୍ତମାନ ଦେଶ ବିଦେଶରେ ପ୍ରାୟ ଶତାଧିକ ସଂଗଠନ ପ୍ରେସ ସ୍ୱାଧୀନତା ସଂପର୍କରେ ରୀତିମତ ଅନୁଧ୍ୟାନ କରୁଛନ୍ତି । ସେଗୁଡ଼ିକ ମଧ୍ୟରେ ଓ୍ୱାଶିଂଟନରେ ଅବସ୍ଥିତ ଫ୍ରିଡ଼ମ ହାଉସ, ଇଣ୍ଟରନ୍ୟାସନାଲ ରିସର୍ଚ୍ଚ ଏଣ୍ଡ ଏକସଚେଞ୍ଜସ ବୋର୍ଡ଼, ନ୍ୟୁୟର୍କରେ ଅବସ୍ଥିତ କମିଟି ଟୁ ପ୍ରୋଟେକ୍ଟ ଜର୍ଣ୍ଣାଲିଷ୍ଟସ ଓ ପ୍ୟାରିସରେ ଅବସ୍ଥିତ ରିପୋଟରର୍ସ ସାନ୍ସ ଫ୍ରଣ୍ଟିୟାର୍ସ ବହୁଳଭାବେ ଚର୍ଚ୍ଚିତ । ଯେକୌଣସି ରାଷ୍ଟ୍ରରେ ପ୍ରେସ ସ୍ୱାଧୀନତା ଉଲଂଘନକୁ ଆନ୍ତର୍ଜାତିକ ସ୍ତରରେ ଗୁରୁତ୍ୱ ଦିଆଯାଉଛି । ଫଳରେ ପ୍ରେସ ସ୍ୱାଧୀନତାର ସୁରକ୍ଷା ପାଇଁ ବିଶ୍ୱବ୍ୟାପୀ ଅନୁକୂଳ ପରିବେଶ ସୃଷ୍ଟି ହୋଇପାରିଛି ।

'ପ୍ରେସ' ସ୍ୱାଧୀନତା ଗଣତାନ୍ତ୍ରିକ ପ୍ରକ୍ରିୟାର ମୁଖ୍ୟ ଆୟୁଧ । ମାନବ ସଭ୍ୟତାର ବିକାଶରେ ମୁକ୍ତ ମତ ପ୍ରକାଶନର ଅଧିକାର ମୌଳିକ ଉପାଦାନ । ପ୍ରତ୍ୟେକ ନାଗରିକ ଆଞ୍ଚଳିକ ସ୍ତରରେ ମୁକ୍ତ ମତ ପ୍ରକାଶନ ଅଧିକାରର ସୁରକ୍ଷା ପାଇଁ ସଚେତନ ରହିବା ସହ ଆନ୍ତର୍ଜାତିକ ସ୍ତରରେ ପ୍ରେସ ସ୍ୱାଧୀନତାର ସୁରକ୍ଷା ପାଇଁ ମଧ୍ୟ ଅଙ୍ଗୀକାରବଦ୍ଧ ହେବା ଆବଶ୍ୟକ ।

'ପ୍ରେସ'କୁ ଯଦି ଓଡ଼ିଆରେ ଆମେ 'ସାମ୍ବାଦିକତା' ବୋଲି ବିଚାରକୁ ନେବା ତେବେ ବିଗତ ତିନି ଦଶନ୍ଧି ଧରି ଏହାର ପରିଧିରେ ବ୍ୟାପକ ଅଭିବୃଦ୍ଧି ଘଟିଛି । ଏହି ପରିପ୍ରେକ୍ଷୀରେ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଲା ଭାରତରେ ସାମ୍ବାଦିକତା ଆରମ୍ଭରୁ ଦୁଇଶହ

ବର୍ଷ ଧରି ସଂବାଦ ପରିବେଷଣ ବୃତ୍ତିଗତ ସାଂବାଦିକଙ୍କ ନିୟନ୍ତ୍ରଣରେ ରହିଆସିଥିବାବେଳେ ବର୍ତ୍ତମାନ ତାହା ସାଧାରଣ ନାଗରିକଙ୍କ ହାତକୁ ଚାଲିଯାଉଛି ।

ପୂର୍ବେ ଗୋଟିଏ ସମ୍ବାଦପତ୍ରର ବାର୍ତ୍ତା ସଂପାଦକ ନିଯୁକ୍ତି ଲାଗି ଅନ୍ତତଃପକ୍ଷେ ୧୫ ରୁ ୨୦ ବର୍ଷର ବୃତ୍ତିଗତ ଅଭିଜ୍ଞତା ବିଚାରକୁ ନିଆଯାଉଥିଲା । କିନ୍ତୁ ଆଜି ଯେ କେହି ସଂବାଦ ପରିବେଷଣ ଲାଗି ଇଣ୍ଟରନେଟରେ ବ୍ଲଗ ଖଣ୍ଡେ ଖୋଲିପାରିବ ଏବଂ ବ୍ଲଗଟିର ସ୍ପର୍ଶକାତର ବିଷୟବସ୍ତୁଗୁଡ଼ିକ କ୍ଷଣିକ ମଧ୍ୟରେ ସାରା ବିଶ୍ୱରେ ପ୍ରସାରିତ ହୋଇପାରିବ । ଏଥିପାଇଁ ପୁଣି ବିଶେଷ ତାଲିମ କିମ୍ବା ଅର୍ଥ ବ୍ୟୟର ମଧ୍ୟ ଆବଶ୍ୟକତା ନାହିଁ । ଫଳରେ ପୂର୍ବରୁ ସଂବାଦ ପ୍ରସାରଣ କ୍ଷେତ୍ରରେ ସଂବାଦଦାତା,

ସହ-ସଂପାଦକ, ବାର୍ତ୍ତା-ସମ୍ପାଦକ ପ୍ରମୁଖ ଯେପରି ଦ୍ୱାରପାଳ ବା 'ଗେଟ କିପର' ଭାବେ ସମ୍ବାଦର ଗୁଣବତ୍ତା ପରୀକ୍ଷାନିରୀକ୍ଷା କରିବାର ସୁଯୋଗ ପାଉଥିଲେ, ତାହା ହଠାତ ଉଭେଇ ଯାଇଛି । ଭାରତରେ ଉପଗ୍ରହଭିତ୍ତିକ ଘରୋଇ ଟେଲିଭିଜନ ଚ୍ୟାନେଲଙ୍କ ସଂଖ୍ୟା ୬୦୦ ଛୁଉଁଥିବା ବେଳେ ୨୦୦ରୁ ଅଧିକ ଚ୍ୟାନେଲ ଅହୋରାତ୍ର ସମ୍ବାଦ ପ୍ରସାରଣରେ ସଂପୃକ୍ତ । ଏହିଭଳି ଚ୍ୟାନେଲଗୁଡ଼ିକରେ ସଂବାଦ ସମ୍ପାଦନା କେଉଁମାନଙ୍କ ଉପରେ ନ୍ୟସ୍ତ ରହୁଛି ତାହା ଉଦ୍‌ବେଗର କାରଣ ହୋଇ ପଡ଼ିଲାଣି । କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟ ପକ୍ଷରୁ ଜାରି କରାଯାଇଥିବା ଏକ ନିର୍ଦ୍ଦେଶନାମାରେ ଘରୋଇ ଚ୍ୟାନେଲଗୁଡ଼ିକ ପରିଚାଳନା ବୋର୍ଡ଼ରେ ଜଣେ ସଦସ୍ୟଙ୍କ ଅନ୍ତଃତ ତିନିବର୍ଷ ଗଣମାଧ୍ୟମରେ ଅଭିଜ୍ଞତା ରହିବା ବାଧ୍ୟତାମୂଳକ ହେବ ବୋଲି କୁହାଯାଇଛି । ଏଥିରୁ ସମକାଳୀନ ଗଣମାଧ୍ୟମ ନିୟନ୍ତ୍ରଣ କାହା ହାତରେ ରହୁଛି, ଏଥିରୁ ସ୍ପଷ୍ଟ ଅନମାନ କରାଯାଇପାରେ ।

କ୍ରମଶଃ ଇଣ୍ଟରନେଟଭିତ୍ତିକ ସୋସିଆଲ ନେଟୱାର୍କ ସଂବାଦ ପରିବେଷଣର ଏକ ପ୍ରମୁଖ ମଞ୍ଚ ରୂପେ ପରିବର୍ତ୍ତିତ ହୋଇଥିବା ସ୍ଥଳେ ନାଗରିକ ସାମ୍ବାଦିକ ବା 'ସିଟିଜେନ ଜର୍ଣ୍ଣାଲିଷ୍ଟ'ଙ୍କ ଗୁରୁତ୍ୱ ବୃଦ୍ଧି ପାଇବାରେ ଲାଗିଛି । ଏମାନେ ଉଭୟ ମୁଦ୍ରଣ ଓ ଦୃଶ୍ୟଶ୍ରାବ୍ୟ ମାଧ୍ୟମରେ ପତିଆରା ଜାରି କରିଛନ୍ତି ଏବଂ ମୌଳିକ ଗଣମାଧ୍ୟମ ବା 'ମେଇନଷ୍ଟ୍ରୀମ ମିଡ଼ିଆ' ନିଜକୁ 'ସୋସିଆଲ ନେଟୱାର୍କ'ରେ ସାମିଲ ବା 'କନଭର୍ଜ' ହେବାକୁ ବାଧ୍ୟ ହେଉଛି । ଏହି ପରିବେଶରେ ସାମ୍ବାଦିକତାର ଗୁଣବତ୍ତା ବଜାୟ ରଖିବା କାଠିକର ପାଠ ହୋଇପଡ଼ିଲାଣି ।

ମୂଳରୁ ସାମ୍ବାଦିକତା ଅଭିଜ୍ଞତାଭିତ୍ତିକ ଥିବାବେଳେ କିଛିକାଳ ଧରି ଆନୁଷ୍ଠାନିକ ତାଲିମ ବୃତ୍ତିଗତ ସାମ୍ବାଦିକ ଗଢ଼ିତୋଳୁଛି । କିନ୍ତୁ ଏକ ପକ୍ଷରେ ବାର୍ଷିକ ୧୫ରୁ ୨୦ ପ୍ରତିଶତ ଅଭିବୃଦ୍ଧି ସହ ତାଳଦେଇ ଉପଯୁକ୍ତ ବୃତ୍ତିଭିତ୍ତିକ ସାମ୍ବାଦିକ ସୃଷ୍ଟି ସମ୍ଭବପର ହୋଇପାରୁ ନଥିବା ବେଳେ ଅପରପକ୍ଷରେ ନାଗରିକ ସାମ୍ବାଦିକଙ୍କ ପାଇଁ ଏ ଯାଏଁ ଉଭୟ ସୁଯୋଗସୁବିଧା ପରିସ୍ଫୁଟିତ ହୋଇପାରି ନାହିଁ । ଫଳରେ ସାମ୍ବାଦିକତାରେ ଅଣସାମ୍ବାଦିକ ମନୋବୃତ୍ତି ପ୍ରବେଶ କରି ସ୍ଥଳବିଶେଷରେ ସାମାଜିକ ଅସ୍ଥିରତାର କାରଣ ପାଲଟିଲାଣି । ସରକାରଙ୍କ ପକ୍ଷରୁ ନିୟମକାନୁନ ପ୍ରଣୟନ କରି ସମ୍ବାଦପ୍ରସାରଣରେ ଅଙ୍କୁଶ ଲଗାଇବା ପରିସ୍ଥିତି ସୃଷ୍ଟି ହେଲେ ସମ୍ବିଧାନ ପ୍ରଦତ୍ତ ନାଗରିକଙ୍କ ମୁକ୍ତମତ ପ୍ରକାଶ ଅଧିକାର କ୍ଷୁଣ୍ଣ ହେବା ପରିସ୍ଥିତି ସୃଷ୍ଟି ହେଲାଣି । 'ଜାତୀୟ ପ୍ରେସ ଦିବସ' ପାଳନ ଅବସରରେ ଆମେ ଏ ଦିଗରେ ମଧ୍ୟ ବିଚାରବିମର୍ଶ କରିବା ଆବଶ୍ୟକ ।

ବିଭାଗୀୟ ମୁଖ୍ୟ,
ସ୍ନାତକୋତ୍ତର ସାମ୍ବାଦିକତା ଓ ଗଣଯୋଗାଯୋଗ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ



# ଦେଶର ଗଣମାଧ୍ୟମରେ ଦଳିତଙ୍କ ସମସ୍ୟା

ପଞ୍ଚାନନ ଅଗ୍ରୱାଲା

ଜାତିର ଜନକ ମହାତ୍ମାଗାନ୍ଧୀ ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନର ନେତୃତ୍ୱ ନେଇ ବ୍ରିଟିଶ ସରକାରଙ୍କୁ ବିତାଡ଼ିତ କରିବା ପାଇଁ ଦୃଢ଼ ସଂକଳ୍ପ ନେଇଥିଲେ । ଏଥିପାଇଁ ତାଙ୍କର ଆତ୍ମବଳ ଆଉ ଦେଶ ପାଇଁ ସମର୍ପିତ ଭାବନା ଅଧିକ ଦୃଢ଼ୀଭୂତ କରିଥିଲା ତାଙ୍କର 'ହରିଜନ' ପତ୍ରିକା । ଦେଶ ସ୍ୱାଧୀନତା ପାଇବା ପୂର୍ବରୁ ଜାତିଭେଦ ଭାବନାର ପ୍ରାବଲ୍ୟତା ଦେଖାଯାଇଥିଲା । ନୀଚ ଜାତିର ଲୋକମାନଙ୍କୁ ସମାଜରେ ଉଚ୍ଚ ମର୍ଯ୍ୟାଦା ମିଳୁ ନ ଥିଲା । ଅସ୍ପୃଶ୍ୟତା ବିରୁଦ୍ଧରେ ଲଢ଼େଇ କରି ଦେଶ ଜାତି ମଧ୍ୟରେ ସମରସତା ଆଣିବାର ପ୍ରୟାସ କ୍ଷେତ୍ରରେ 'ହରିଜନ' ପତ୍ରିକା ଗୁରୁତ୍ୱ ଭୂମିକା ନେଇଥିଲା ।

୧୯୩୩ ମସିହାରେ 'ହରିଜନ' ପତ୍ରିକା ପୁନେଠାରୁ ପ୍ରକାଶିତ ହେଲା । ଏହି ସାପ୍ତାହିକ ଇଂରାଜୀ ପତ୍ରିକାର ସଂପାଦକ ଥିଲେ ଆର.ଭି. ଶାସ୍ତ୍ରୀ । ସେ ୧୧ ଫେବୃୟାରୀ ୧୯୩୩ରେ ଦାୟିତ୍ୱ ଗ୍ରହଣ କରିଥିଲେ । 'ହରିଜନ'ର ହିନ୍ଦୀ ସଂସ୍କରଣ 'ହରିଜନ ସେବକ'ର ପ୍ରକାଶନ ବିୟୋଗୀ ହରିଙ୍କ ସମ୍ପାଦନାରେ ୨୪ ଫେବୃୟାରୀ ୧୯୩୩ରେ ପ୍ରାରମ୍ଭ ହେଲା । ଦେଶରେ ପ୍ରଥମ ହରିଜନ ଦିବସ ୧୮ ଡିସେମ୍ବର ୧୯୩୨ ମସିହାରେ ପାଳନ କରାଗଲା । ହରିଜନଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ନିମନ୍ତେ ଅନ୍ନ, ବସ୍ତ୍ର ଦାନ କରିବା କାର୍ଯ୍ୟକ୍ରମ, ଛୁଆଁ ଅଛୁଆଁ ଭେଦଭାବ ଦୂର କରିବା, ସବର୍ଣ୍ଣମାନଙ୍କ ପରି ହରିଜନମାନଙ୍କ ମନ୍ଦିର ପ୍ରବେଶ ନୀତି ଅନୁମତି ମିଳିବା ନେଇ ସାରା ଦେଶରେ କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା । ଏଥିପାଇଁ ଗାନ୍ଧିଜୀ ୧୯୩୩ ମସିହା ମେ ଆଠ ତାରିଖଠାରୁ ୨୯ ମେ ପର୍ଯ୍ୟନ୍ତ ଉପବାସ କରିଥିଲେ । ହରିଜନ ପତ୍ରିକା ମେ ୬, ୧୯୩୩ ସଂଖ୍ୟାରେ ଚକ୍ରବର୍ତ୍ତି ରାଜ ଗୋପାଳଚାରୀ ଲେଖିଥିଲେ ଯେ ସେ ୪ ଘଣ୍ଟା କାଳ ପର୍ଯ୍ୟନ୍ତ ଗାନ୍ଧିଜୀଙ୍କୁ ଅନଶନ ନ କରିବାକୁ ପ୍ରବର୍ତ୍ତାଇ ଥିଲେ, ଶେଷରେ ବିଫଳ ହୋଇଥିଲେ । ହରିଜନ ପତ୍ରିକାରେ ୨୦ ମେ, ୧୯୩୩ ସଂଖ୍ୟାରେ ରାଜଗୋପାଳଚାରୀ ସଂପାଦକୀୟ ମଧ୍ୟ ଲେଖିଥିଲେ । ୨୭ ମେରୁ ୩ ଜୁନ, ୧୦ ଜୁନ୍‌ରୁ ୧୭ ଜୁନ, ୨୪ ଜୁନ ୧୯୩୩ରେ ମହାଦେବ ଦେଶାଇ ସମ୍ପାଦକୀୟ ଲେଖିଥିଲେ । ଗାନ୍ଧିଜୀ ୮ ଜୁଲାଇ ୧୯୩୩ରେ ପୁନଃ ସଂପାଦକୀୟ ଲେଖା ଲେଖିଥିଲେ । ୧୮୩୮ ପର୍ଯ୍ୟନ୍ତ ହରିଜନ ପୁନେରୁ ପ୍ରକାଶିତ ହେଲା । ଗାନ୍ଧିଜୀ ପୁନେ ଜେଲରେ ଥିବାବେଳେ ପତ୍ରିକା ପ୍ରକାଶନ ବନ୍ଦ ହୋଇଗଲା । ୧୯୪୨ ମସିହାରେ 'ହରିଜନ ସେବକ' ପ୍ରକାଶ ପାଇଲା ।

୧୯୪୨ ମସିହା ଅଗଷ୍ଟ ମାସରେ କଂଗ୍ରେସ ଅଧିବେଶନ ସମୟରେ ଗାନ୍ଧିଜୀ ଭାରତ ଛାଡ଼ ଆନ୍ଦୋଳନର ଡାକରା ଦେଲେ । ସେତେବେଳେ ହରିଜନ ପ୍ରେସରେ ତାଲା ପଡ଼ିଲା । ବ୍ରିଟିଶ ପୋଲିସ 'ହରିଜନ' ପତ୍ରିକାର ସମସ୍ତ କପିଗୁଡ଼ିକୁ ଜଳାଇ ଦେଇଥିଲେ । ମେ ୬, ୧୯୪୪ ରେ ଗାନ୍ଧିଜୀ ଜେଲରୁ ମୁକ୍ତ ହେଲେ । ୧୦ ଫେବୃୟାରୀ ୧୯୪୬ରେ ହରିଜନ ପତ୍ରିକାର ପୁନଃ ପ୍ରକାଶ ପାଇଥିଲା । ୨୩ ଫେବୃୟାରୀ ୧୯୩୪ରେ ପ୍ରକାଶନର ଏକବର୍ଷ ପୂର୍ତ୍ତି ବେଳେ ଏହାର ଗ୍ରାହକ ସଂଖ୍ୟା ୧୬୦୦ ଥିଲା ।

ହରିଜନମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ କୃଷ୍ଣରାଓ ଭାଲେକର ମହାରାଷ୍ଟ୍ରରୁ 'ଦୀନବନ୍ଧୁ' ପତ୍ରିକା ଜାନୁୟାରୀ ୧୮୭୭ରେ ପ୍ରକାଶ କରିଥିଲେ । ୧୯୧୦ ମସିହାରେ ମୁକୁନ୍ଦରାଓ ପାଟିଲଙ୍କ ସମ୍ପାଦନାରେ 'ଦୀନମିତ୍ର' ପ୍ରକାଶ ହେଲା । ଜୁଲାଇ ୧୯୧୭ ମସିହାରେ ବାଲଚନ୍ଦ୍ର କୋଠାରୀଙ୍କ ସମ୍ପାଦନାରେ 'ଜାଗରୁକ' ପତ୍ରିକା ପ୍ରକାଶ ପାଇଲା । ୨୫ ଅକ୍ଟୋବର ୧୯୧୭ରେ 'ଶ୍ରୀ ପଦ ରାଓ ସିନ୍ଧେ ଜାଗୃତି' ପ୍ରକାଶ କଲେ ।

ଗୋପାଳ ବାବା ବଲଙ୍ଗକର ପରାଧୀନ ଭାରତର ପ୍ରଥମ ଦଳିତ ସାମ୍ବାଦିକ ରୂପେ କାମ କରି ଯଶସ୍ୱୀ ହୋଇଥିଲେ । ଶିବରାମ ଜାନବା କାମ୍ବଲେ ପରାଧୀନ ଭାରତର ପ୍ରଥମ ଦଳିତ ସମ୍ପାଦକ ଥିଲେ । ତାଙ୍କ ଜନ୍ମ ୧୮୭୫ ମସିହା ପୁନେଠାରେ ଏକ ମହାର ପରିବାରରେ ହୋଇଥିଲା । ସେ 'ସୋମବଂଶୀୟ ମିତ୍ର' ପତ୍ରିକାର ସମ୍ପାଦକ ଥିଲେ । କିସନ ଫାଗୁଜୀ ବଂସୋଡ଼ ସାମାଜିକ ଦଳିତ ଚେତନା ସଂସ୍କାରକ ଥିଲେ । ୧୮ ଫେବୃୟାରୀ ୧୮୭୯ ନାଗପୁର ନିକଟ ଗ୍ରାମରେ ଏକ ଦଳିତ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ଡଃ ଆମ୍ବେଦକର 'ମୂକନାୟକ' (୧୯୨୦), 'ବହିଷ୍କୃତ ଭାରତ' (୧୯୨୭), 'ସମତା' (୧୯୩୦), 'ଜନତା ଓ ପ୍ରବୁଦ୍ଧ ଭାରତ' (୧୯୫୬) ପ୍ରଭୃତି କ୍ରାନ୍ତିକାରୀ ପତ୍ରିକାମାନଙ୍କର ସମ୍ପାଦନା କାର୍ଯ୍ୟ ତୁଲାଉଥିଲେ ।

୧୯୧୭ ମସିହାରେ ଦୈନିକ ହିନ୍ଦୀ ବିଶ୍ୱମିତ୍ର ପ୍ରକାଶନ ମୂଳଚନ୍ଦ ଅଗ୍ରୱାଲା କରିଥିଲେ । ସେ ଭାରତମିତ୍ରରେ ଅମ୍ବିକା ପ୍ରସାଦ ବାଜପେୟୀ ଆଉ କଲିକତା ସମାଚାରର ଗଣେଶ ସିଂହ ଉଦୋରିଆଙ୍କଠାରୁ ସାମ୍ବାଦିକତା ଶିକ୍ଷା ଲାଭ କରିଥିଲେ । ୧୯୪୧ ମସିହାରେ ବିଶ୍ୱମିତ୍ର ବମ୍ବେ ଓ ଦିଲ୍ଲୀ ସଂସ୍କରଣ ପ୍ରକାଶିତ ହେଲା । ୩୧ ଡିସେମ୍ବର ୧୯୩୦ ସଂଖ୍ୟାରେ ଜେଲରୁ ପ୍ରେରିତ ମହାତ୍ମାଗାନ୍ଧୀଙ୍କ ୧୫ଟି ଭାବପୂର୍ଣ୍ଣ ପତ୍ର ପ୍ରକାଶ ପାଇଥିଲା ବିଶ୍ୱମିତ୍ର ଦଳିତ ସମସ୍ୟା ସମ୍ପର୍କରେ ସମ୍ବାଦମାନ ପ୍ରକାଶ କରୁଥିଲା ।

ଆନନ୍ଦ ବଜାର ପତ୍ରିକା ୧୩ ମାର୍ଚ୍ଚ ୧୯୨୨ରେ ପ୍ରକାଶ ପାଇଲା । ପ୍ରଫୁଲ୍ଲ କୁମାର ସରକାର ଏହାର ପ୍ରତିଷ୍ଠାତା ସମ୍ପାଦକ ଥିଲେ । ଏହି ପତ୍ରିକାକୁ ୧୨ ଥର ପର୍ଯ୍ୟନ୍ତ ବ୍ରିଟିଶ ଦମନ ଚକ୍ରର ସାମନା କରିବାକୁ ପଡ଼ିଥିଲା । ଦଳିତଙ୍କ ସମସ୍ୟା, ଅସ୍ପୃଶ୍ୟତା ବିରୁଦ୍ଧରେ ପ୍ରାୟତଃ ଲେଖାମାନ ପ୍ରକାଶ ପାଉଥିଲା । ୬ ଅକ୍ଟୋବର ୧୯୨୩ ମସିହା ପର୍ଯ୍ୟନ୍ତ ପ୍ରଫୁଲ୍ଲ ସରକାର ସମ୍ପାଦକ ରହିଲେ । ୩୧ ଅକ୍ଟୋବର ୧୯୩୦ରେ ମାଖନ ଲାଲ ସେନ ସଂପାଦକ ହେଲେ । ସେ ସମ୍ପାଦକ ଦାୟିତ୍ୱ ନେବା ପରେ ପରେ ତାଙ୍କୁ ୬ ମାସ ଜେଲ ଦଣ୍ଡ ଓ ୧ ହଜାର ଟଙ୍କା ଜୋରିମାନା ଦଣ୍ଡରେ ଦଣ୍ଡିତ ହୋଇଥିଲେ । ୧୯୨୨ ମସିହାରେ ପ୍ରୟାଗରୁ ରାମରେଖା ସିଂହ ସହଗଲଙ୍କ ସଂପାଦନାରେ 'ଚାନ୍ଦ' ପତ୍ରିକା ପ୍ରକାଶ ପାଇଲା ସେଥିରେ ଦଳିତ ଜାତିର ସମସ୍ୟା ମାନ ବିଭିନ୍ନ ସମୟରେ ପ୍ରକାଶ ପାଉଥିଲା ।

ଦଳିତ ବିଶେଷ କରି କନ୍ଧମାଳର ପାଣ ଲୋକମାନଙ୍କୁ ମିଶନାରୀ ସଂସ୍ଥା ପ୍ରଲୋଭନ ଦେଖାଇ ଧର୍ମାନ୍ତରଣ କରୁଥିବା ଖବରମାନ ଦିଲ୍ଲୀରୁ ପ୍ରକାଶ ପାଉଥିବା ହିନ୍ଦୀ ସାପ୍ତାହିକ 'ପାଞ୍ଚଜନ୍ୟ', ଓଡ଼ିଆ ସାପ୍ତାହିକ 'ରାଷ୍ଟ୍ରଦୀପ' ପତ୍ରିକାରେ ସମ୍ବାଦମାନ ପ୍ରକାଶ କରି ବିଭିନ୍ନ ସମସ୍ୟା ଲୋକ ଲୋଚନକୁ ଆଣିଥିଲା । ପ୍ରଜାତନ୍ତ୍ର 'ଗାଁ ମଜଲିସ' ସ୍ତମ୍ଭରେ ଚକାପାଦରେ 'ଶିବରାତ୍ରୀ' ଶୀର୍ଷକ ଲେଖା ଡଃ ହରେକୃଷ୍ଣ ମହତାବ ଲେଖି ଦଳିତମାନଙ୍କ ସମସ୍ୟା ଉପରେ ଆଲୋକପାତ କରିଥିଲେ ।

ପଞ୍ଚସଖା ଯୁଗର କବି ବଳରାମ ଦାସ ୧୪୭୨ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମା'ଙ୍କ ନାମ ଜମ୍ବୁବତୀ ଥିଲା । ତାଙ୍କ ପିତା ଉତ୍କଳ ଗଜପତିଙ୍କ ମନ୍ତ୍ରୀ ଥିଲେ । ତାଙ୍କ ରଚିତ 'ଲକ୍ଷ୍ମୀପୁରାଣ' ଓଡ଼ିଆଙ୍କ ଘରେ ଘରେ ପରିଚିତ । ଶ୍ରୀୟା ଚାଣ୍ଡାଳୁଣୀ ଘରେ ଲକ୍ଷ୍ମୀ ଅତିଥି ହୋଇଥିବା ଯୋଗୁଁ ଭଗବାନ ଜଗନ୍ନାଥ, ବଳଭଦ୍ର ଭର୍ତ୍ସନା କରିଥିଲେ, ଯାହା ପରେ ଭଗବାନ ଜଗନ୍ନାଥ, ବଳରାମ ଭୋକ, ଉପବାସରେ ରହି ନିର୍ଯ୍ୟାତନା ଭୋଗିବାକୁ ପଡ଼ିଥିଲା । କବି ବଳରାମ ଦାସ ଶ୍ରୀୟା ଚାଣ୍ଡାଳୁଣୀର କର୍ତ୍ତବ୍ୟପରାୟଣତା, ଧର୍ମ ପରାୟଣ ଆଉ ଅତିଥି ସେବାର ଉଚ୍ଚ ପ୍ରଶଂସା କରିଛନ୍ତି । ଦଳିତ ଜାତିର ଉତ୍‌ଥାନ ପାଇଁ ଭେଦଭାବ ଭୁଲିଯିବାକୁ କବି ଏକ ବୈପ୍ଳବିକ ପଦକ୍ଷେପ ନେଇଥିଲେ, ତାହା ଯୋଗୁଁ ସେ ଆଜି ସୁଦ୍ଧା ଚିରସ୍ମରଣୀୟ ହୋଇ ରହିଛନ୍ତି ।

ଓଡ଼ିଶା, ଝାଡ଼ଖଣ୍ଡ ସୀମାନ୍ତ ଇଲାକାରେ ଡାହାଣୀ ସନ୍ଦେହ ଯୋଗୁଁ ଦଳିତମାନଙ୍କ ଅତ୍ୟାଚାର ତଥା ହତ୍ୟାକାଣ୍ଡ ଖବରମାନ ବିଭିନ୍ନ ସମ୍ବାଦ ପତ୍ରରେ ପ୍ରକାଶ ପାଇଥିଲା । ତେବେ 'ଇଣ୍ଡିଆନ ଏକ୍ସପ୍ରେସ'ରେ ସାମ୍ବାଦିକ ଶିବ ମହାନ୍ତି ଏକ ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ପ୍ରକାଶ କରି ଲୋକଲୋଚନକୁ ଆଣିଥିଲେ । ଅତୀତରେ କନ୍ଧମାଳରେ କନ୍ଧ ଓ ପାଣଙ୍କ ମଧ୍ୟରେ ସାଂପ୍ରଦାୟିକ ଦଙ୍ଗା ଘଟିଥିଲା । ଥିରେ ତିରିଶରୁ ଅଧିକ ଲୋକ ପ୍ରାଣ ହରାଇ ଥିଲେ । ସମ୍ବେଦନଶୀଳ ଘଟଣା ପାଇଁ ରାଷ୍ଟ୍ରୀୟ ସ୍ତରରେ କୌଣସି ପତ୍ରିକା ଆଗଭର ହୋଇ ସାହସ ବାନ୍ଧି ଲେଖି ନ ଥିବା ମନେହୁଏ । ଏଣୁ ସାମ୍ବାଦିକମାନଙ୍କ ଭୂମିକା ଏଠାରେ ଗୁରୁତ୍ୱପୂର୍ଣ୍ଣ ଅଟେ । ଜାତିଆଣ ଦଙ୍ଗା ଦେଶ ମଧ୍ୟରେ ବିଭାଜନର ସୂତ୍ରପାତ କରିଥାଏ । ପୂର୍ବାଞ୍ଚଳ, ଆସାମ, ମଣିପୁର, ତ୍ରିପୁରା ଆଦି ପାର୍ବତ୍ୟ ଅଞ୍ଚଳରେ ଏହି ଭେଦଭାବ ଯୋଗୁଁ ବିଦେଶୀ ଶକ୍ତି ମୁଣ୍ଡଟେକି ଉଠୁଛି । ଏଣୁ ସାମ୍ବାଦିକମାନେ ଦଳିତଙ୍କ ସମସ୍ୟାକୁ ହାଲୁକା ଭାବେ ବିଚାର ନ କରି ଗମ୍ଭୀର ଭାବେ ପରିସ୍ଥିତିକୁ ଅନୁଧ୍ୟାନ କରିବାକୁ ହେବ । ଏଥିରେ ଦେଶର ରାଷ୍ଟ୍ରୀୟ ସଂହତା, ଏକତା, ସଦ୍‌ଭାବ ବୃଦ୍ଧି ପାଇବ ।

ଏମ୍.ବି.-୭୭, ବଡ଼ଗଡ଼ ବ୍ରିଟ କଲୋନୀ,
ଭୁବନେଶ୍ୱର-୧୮

# ଓଡ଼ିଶାରେ ସମ୍ବାଦପତ୍ର ପ୍ରକାଶନର ଧାରା

ଶିବ ପ୍ରସାଦ ତ୍ରିପାଠୀ

ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପୂର୍ବରୁ ୧୮୬୬ରେ ଓଡ଼ିଶାରେ ସମ୍ବାଦପତ୍ର ପ୍ରକାଶନର ଧାରା ଆରମ୍ଭ ହୋଇଥିଲା । ପାଶ୍ଚାତ୍ୟ ସଂସ୍କୃତିର ବ୍ୟାପକ ପ୍ରସାରର ପରିଣତ ସ୍ୱରୂପ ୧୮୩୭ରେ ଖ୍ରୀଷ୍ଟିୟାନ ମିସ୍‌ନାରୀ ସଂସ୍ଥାଦ୍ୱାରା କଟକରେ ଏକ ମୁଦ୍ରଣାଳୟ 'ଦି କଟକ ମିସନ ପ୍ରେସ୍' ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶାର ବୌଦ୍ଧିକ ଚେତନାର ବିକାଶ କ୍ଷେତ୍ରରେ ଏହି ମୁଦ୍ରଣାଳୟର ପ୍ରଭାବ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୮୨୨ରୁ ମିସନାରୀମାନେ ଓଡ଼ିଶାରେ ଇଂରାଜୀ ଶିକ୍ଷାର ତଥା ଖ୍ରୀଷ୍ଟିୟାନ ଧର୍ମର ପ୍ରସାର ନିମନ୍ତେ କାର୍ଯ୍ୟ କରୁଥିଲେ ।

୧୮୬୬ରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଲା । ବହୁ ଲୋକ ଅନାହାରେ ମୃତ୍ୟୁମୁଖରେ ପଡ଼ିଲେ । ଏହି ପରିସ୍ଥିତିକୁ ସମ୍ଭାଳିବା ଦିଗରେ ବ୍ରିଟିଶ ସରକାର ସଂପୂର୍ଣ୍ଣ ଭାବରେ ଅସମର୍ଥ ହେଲା । ଏହି ସମୟରେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାକୁ ଲୋକଲୋଚନକୁ ଆଣି ଜନଚେତନାର ବିକାଶ ସାଙ୍ଗକୁ ସରକାରଙ୍କ ନିକଟରେ ଦାବି ଉପସ୍ଥାପନ ନିମନ୍ତେ ଏକ ସମ୍ବାଦପତ୍ର ପ୍ରକାଶନର ଆବଶ୍ୟକତା ଅନୁଭୂତ ହେଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ବାସ୍ତବ ସମସ୍ୟା ଉପସ୍ଥାପନ ଲାଗି କର୍ମବୀର ଗୌରୀଶଙ୍କର ରାୟ ପ୍ରଥମ ଓଡ଼ିଆ ସମ୍ବାଦପତ୍ର 'ଉତ୍କଳ ଦୀପିକା' ପ୍ରକାଶ କରିଥିଲେ । ସମୟର କଷଟି ପଥରରେ ପରୀକ୍ଷିତ ହୋଇ ଏହି ସମ୍ବାଦପତ୍ର ୧୮୬୬ରୁ ୧୯୩୪ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ଏହି ସମୟ ଥିଲା ଓଡ଼ିଶା ପକ୍ଷରେ ସଂକଟର ସମୟ । ଓଡ଼ିଆ ଭାଷାର ସୁରକ୍ଷା ଦିଗରେ ମଧ୍ୟ ବହୁବିଧ ଉଦ୍ୟମ ହୋଇଥିଲା ଓ ୧୯୩୬ ଏପ୍ରିଲ ପହିଲାରୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଥିଲା । ଏହି ସମୟରେ ପତ୍ରପତ୍ରିକା ଓ ସମ୍ବାଦପତ୍ରର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପର୍ବରୁ ୧୮୬୧ରେ ବାଲେଶ୍ୱରରୁ 'ବୋଧଦାୟିନୀ' ପତ୍ରିକା ପ୍ରକାଶିତ ହୋଇଥିଲା । 'ଉତ୍କଳ ଦୀପିକା' କଟକ ପ୍ରିଣ୍ଟିଂ କମ୍ପାନିରୁ ସାପ୍ତାହିକ ଭାବରେ ପ୍ରକାଶ ପାଇଥିଲା ।

୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହୋଇଥିଲା ଓମେଶ ଚନ୍ଦ୍ର ବାନାର୍ଜୀଙ୍କ ଅଧ୍ୟକ୍ଷତାରେ । ସର୍ବଭାରତୀୟ ସ୍ତରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଦୟନୀୟ ସ୍ଥିତି ଓ ସମସ୍ୟାବଳୀ ଉପସ୍ଥାପନ ଲାଗି କର୍ମବୀର ଗୌରୀ ଶଙ୍କର ରାୟ ଏବଂ ଉତ୍କଳଗୌରବ ମଧୁସୂଦନ ଦାସ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ଯୋଗଦାନ କରିଥିଲେ । ଏହାପରେ ଦେବଗଡ଼ରୁ ୧୮୮୯ରେ ସମ୍ବଲପୁର ହିତୈଷିଣୀ ପ୍ରକାଶ ପାଇଥିଲା ।

ଦି କଟକ ମିସନ ପ୍ରେସ୍ ପ୍ରତିଷ୍ଠିତ ହେବା ପରେ ଓଡ଼ିଶାରେ ମୁଦ୍ରଣାଳୟ ପ୍ରତିଷ୍ଠା ତଥା ମୁଦ୍ରିତ ପୁସ୍ତକ ଓ ଅନ୍ୟାନ୍ୟ ସାମଗ୍ରୀ ପ୍ରତି ଜନସାଧାରଣଙ୍କର ଆଦର ବଢ଼ିଥିଲା । ନଅଙ୍କ ଦୁର୍ଭିକ୍ଷ ସମୟରେ ଓଡ଼ିଶା ଡିଭିଜନର ତତ୍କାଳୀନ କମିଶନର ଟି.ଇ. ରେଭେନ୍‌ସା ତାଙ୍କର ସିରସ୍ତାଦାର ବିଚିତ୍ରାନନ୍ଦ ଦାସଙ୍କୁ ପ୍ରବର୍ତ୍ତାଇ କଟକ ପ୍ରିଣ୍ଟିଂ ପ୍ରେସ୍ ଦ୍ୱାରା ପ୍ରତିଷ୍ଠା କରାଇଥିଲେ ଓ ସରକାରଙ୍କୁ ଗଠନମୂଳକ ଭାବରେ ସମାଲୋଚନା କରିବା ନିମନ୍ତେ ଏକ ସମ୍ବାଦପତ୍ର ପ୍ରକାଶନ ଲାଗି ପରାମର୍ଶ ଦେଇଥିଲେ ।

୧୮୬୮ରେ ବ୍ୟାସକବି ଫକୀର ମୋହନ ସେନାପତି ବାଲେଶ୍ୱରରେ ଉତ୍କଳ ପ୍ରିଣ୍ଟିଂ ପ୍ରେସ୍ ପ୍ରତିଷ୍ଠା କରି 'ସମ୍ବାଦବାହିକା' ପ୍ରକାଶ କଲେ । ରାଜା ବୈକୁଣ୍ଠନାଥ ଦେ ମଧ୍ୟ ଏକ ମୁଦ୍ରଣାଳୟ ପ୍ରତିଷ୍ଠା କରି 'ଉତ୍କଳ ଦର୍ପଣ' ପ୍ରକାଶ କରିଥିଲେ । ଫକୀର ମୋହନ ସେନାପତି ଓ ବୈକୁଣ୍ଠନାଥ ଦେ ସମ୍ବାଦପତ୍ର ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଲୋକଙ୍କୁ ଆଲୋକର ପଥ ଦେଖାଇଥିଲେ ।

ଏହାପରେ ଓଡ଼ିଶାରେ ଅନେକ ମୁଦ୍ରଣାଳୟ ପ୍ରତିଷ୍ଠା ହୋଇଥିଲା । ମୟୂରଭଞ୍ଜ ପ୍ରେସ (୧୮୭୯), ବାମଣ୍ଡା ପ୍ରେସ (୧୮୮୫), ଜଗନ୍ନାଥ ବଲ୍ଲଭ ପ୍ରେସ (୧୮୮୭), ଅରବିନ୍ଦ (୧୮୯୩), ରାୟ ପ୍ରେସ୍ (୧୮୯୪), ବିନୋଦ ପ୍ରେସ (୧୮୯୭), ଉତ୍କଳ ଦର୍ପଣ ପ୍ରେସ (୧୯୦୨), ଫ୍ରେଜର ପ୍ରେସ (୧୯୦୨) ଓ ସାଧନା ପ୍ରେସ (୧୯୨୧) ପ୍ରଭୃତି ମୁଦ୍ରଣାଳୟ ପ୍ରତିଷ୍ଠିତ ହେବା ପରେ ବହୁ ପତ୍ରପତ୍ରିକା ପ୍ରକାଶ ପାଇ ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିକୁ ରୁଦ୍ଧିମନ୍ତ କରିଥିଲା ।

କଟକ ଷ୍ଟାଣ୍ଡାର୍ଡ଼, ଆର୍ଗୁଜ, ଓଡ଼ିଶା ପ୍ୟାଟ୍ରିୟଟ (୧୮୬୮), ଉତ୍କଳ ହିତୈଷିଣୀ, ଉତ୍କଳ ଶୁଭଙ୍କରି (୧୮୬୯), ମୟୂରଭଞ୍ଜ ପାକ୍ଷିକ ପତ୍ରିକା (୧୮୭୯), ବିଦେଶୀ (୧୮୮୦), ଉତ୍କଳ ପ୍ରଭା (୧୮୯୧), ଇନ୍ଦ୍ରଧନୁ (୧୮୯୪), ଉତ୍କଳ ବନ୍ଧୁ (୧୯୯୬), ପ୍ରଭାତିତାରା (୧୮୯୭), ଉତ୍କଳ ସାହିତ୍ୟ (୧୮୯୭), ଓଡ଼ିଶା ଟାଇମ୍ସ (୧୮୯୮), ଗଞ୍ଜାମ ଓଡ଼ିଆ ହିତବାଦିନୀ(୧୮୯୯), ପ୍ରଜାବନ୍ଧୁ (୧୯୦୩), ଉତ୍କଳ ସେବକ, ମନୋରମା, ଷ୍ଟାର ଅଫ୍ ଉତ୍କଳ (୧୯୦୫), ସନାତନ ଧର୍ମ (୧୯୦୬), ଗଞ୍ଜାମ ନିଉଜ୍ (୧୯୦୭), ସମାଜ ମିତ୍ର, ସତ୍ୟ ସମାଚାର, ନବ ଭାରତ, ଦି ଓଡ଼ିଆ (୧୯୧୭), ଭୀଷ୍ମ ଶରଶଯ୍ୟା, ନବଯୁଗ ତଥା ସାଧନା ଓ ସେବା ପ୍ରଭୃତି ପ୍ରକାଶ ପାଇ ଓଡ଼ିଶାରେ ପ୍ରକାଶନ ପର୍ବର ବିକାଶ ଦିଗରେ ସହାୟକ ହୋଇଥିଲା ।

ଏହି କାଳରେ ମିସନାରୀମାନେ ମଧ ସମ୍ବାଦପତ୍ର ଓ ପତ୍ରପତ୍ରିକା ମାଧମରେ ଜନମତକୁ ବିଭ୍ରାନ୍ତ କରିବା ଲାଗି ଉଦ୍ୟମ କରିଥିଲେ । ଏହାର ପରିଣତି ସ୍ୱରୂପ ରେଭେରେଣ୍ଡ ସି. ଲାସେଙ୍କ ସମ୍ପାଦନାରେ ଜ୍ଞାନାରୁଣ (୧୮୪୮), ପ୍ରବୋଧ ଚନ୍ଦ୍ରିକା (୧୯୫୬) ଏବଂ ଅରୁଣୋଦୟ (୧୯୬୧) ମିସନାରୀମାନଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲେ ମଧ ଜନସହଯୋଗ, ସମର୍ଥନ ଓ ଆଦର ଅଭାବରୁ ଏଗୁଡ଼ିକ ସ୍ୱତଃ ବନ୍ଦ ହୋଇଯାଇଥିଲା ।

୧୯୧୪ ମହାବିଷୁବ ସଂକ୍ରାନ୍ତିରେ ବ୍ରହ୍ମପୁରରୁ ଆତ୍ମପ୍ରକାଶ କରିଥିଲା ଦୈନିକ 'ଆଶା' । ଏହା ୧୯୨୮ରେ ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇଥିଲା । 'ଉତ୍କଳ ଦୀପିକା' ପରେ 'ଦୈନିକ ଆଶା' ସୁପ୍ରତିଷ୍ଠିତ ହୋଇଥିଲା । ଏହାର ପ୍ରତିଷ୍ଠାତା ସମ୍ପାଦକ ଶଶିଭୂଷଣ ରଥଙ୍କ ପ୍ରଗାଢ଼ ଉଦ୍ୟମ ପ୍ରତି ଆକୃଷ୍ଟ ହୋଇ ଉତ୍କଳମଣି ଗୋପବନ୍ଧୁ ଦାସ ଓ ପଣ୍ଡିତ ନୀଳକଣ୍ଠ ଦାସ ସାପ୍ତାହିକ ଆଶାର ସମ୍ପାଦନା କାର୍ଯ୍ୟରେ ସମୟ ସମୟରେ ସହଯୋଗ କରୁଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର କାଳରେ ଆଶାରେ ପ୍ରକାଶିତ ସମ୍ବାଦ ତଥା ଅଗ୍ରଲେଖ ସମୂହ ଗାନ୍ଧିଜୀଙ୍କ ଆଦର୍ଶର ପ୍ରସାର ଦିଗରେ ସହାୟକ ହୋଇଥିଲା ଓ ଜଣେ ସତ୍ୟାଗ୍ରହୀ ଭାବରେ ସୁପରିଚିତ ଶଶିଭୂଷଣ ରଥ ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହେଲେ । ଏହି କାଳରେ ସରକାରଙ୍କ ଦ୍ୱାରା 'ଦୈନିକ ଆଶା' ଉପରେ ବହୁ କଟକଣା ଲାଗୁ କରାଯାଇଥିଲା । ତେଣୁ ଏହାର ପ୍ରତିବାଦ ସ୍ୱରୂପ ସମ୍ପାଦକୀୟ ନିମନ୍ତେ ଉଦ୍ଦିଷ୍ଟ ସ୍ଥାନରେ ବଜାର ଦର ପ୍ରଭୃତି ପ୍ରକାଶ ପାଉଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ 'ଦୈନିକ ଆଶା'ର ସହଯୋଗୀ ସମ୍ବାଦପତ୍ର ଭାବରେ କେ.ଏନ୍. ଆଚାରୀଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା 'ନିଉ ଓଡ଼ିଶା' । ପରେ ଉଭୟ ସମ୍ବାଦପତ୍ରର ପ୍ରକାଶନସ୍ଥଳ, କଟକକୁ ସ୍ଥାନାନ୍ତରିତ ହୋଇଥିଲା । ଶଶିଭୂଷଣଙ୍କ ଏକମାତ୍ର କନ୍ୟାଙ୍କ ନାମାନୁସାରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ରର ନାମ ରଖାଯାଇଥିଲା 'ଆଶା' । ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରକାଶନ ବନ୍ଦ ରହିବା ପରେ 'ଦୈନିକ ଆଶା' ପୁନରାୟ ବ୍ରହ୍ମପୁରରୁ ଶଶିଭୂଷଣଙ୍କ ଅନ୍ୟତମ ଘନିଷ୍ଠ ସହଯୋଗୀ ଶ୍ରୀହର୍ଷ ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା ।

ଏହି ସମୟରେ ସମ୍ବାଦପତ୍ର ପ୍ରକାଶନ କ୍ଷେତ୍ରରେ ସମଗ୍ର ବିଶ୍ୱରେ ବ୍ୟାପକ ବିକାଶ ଘଟି ସାରିଥାଏ । ୧୮୬୮ ବେଳକୁ ଲଣ୍ଡନ ଟାଇମ୍ସ ସମ୍ବାଦପତ୍ରରେ ରୋଟାରୀ ମୁଦ୍ରାଯନ୍ତ୍ରରେ ମୁଦ୍ରିତ ହେଉଥିଲା ବୋଲି ଜଣାଯାଏ । ସମକାଳରେ ଗଭୀର ଦୁଃସ୍ଥିତି ମଧରେ ଓଡ଼ିଶାରେ ସମ୍ବାଦପତ୍ରର ଉଦ୍‌ଯୋଗ ପର୍ବର ଅୟମାରମ୍ଭ ଘଟିଥିଲା ।

ଉତ୍କଳମଣି ଗୋପବନ୍ଧୁ ଦାସ ୧୯୧୯ ଅକ୍ଟୋବର ମାସ ୪ ତାରିଖ ଦିନ ସତ୍ୟବାଦୀରୁ 'ସମାଜ' ସମ୍ବାଦପତ୍ରରେ ପ୍ରକାଶନ ଆରମ୍ଭ କରିଥିଲେ । ଚାରିପୃଷ୍ଠାର ଟାବଲଏଡ଼ ସାଇଜର ଏହି ସମ୍ବାଦପତ୍ରର ପ୍ରତିଖଣ୍ଡର ମୂଲ୍ୟ ଥିଲା ଦୁଇପଇସା ଓ ବାର୍ଷିକ ଦେୟ ଥିଲା ଏକ ଟଙ୍କା ଆଠ ଅଣା । (୪ ପଇସାକୁ ୧ ଅଣା ଓ ୧୬ ଅଣାକୁ ୧ ଟଙ୍କା) । ସମାଜର ପ୍ରକାଶନ ପରେ ଓଡ଼ିଆ ସମ୍ବାଦପତ୍ର ଓ ସାମ୍ବାଦିକତାର ଏକ ନୂତନ ପର୍ବ ଆରମ୍ଭ ହେଲା । ଉତ୍କଳମଣି ଗୋପବନ୍ଧୁ 'ସମାଜ' ସମ୍ବାଦପତ୍ର ପ୍ରକାଶ କରିବା ପୂର୍ବରୁ 'ସତ୍ୟବାଦୀ' ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ । ଏହା ଓଡ଼ିଆ ସାହିତ୍ୟର ବିକାଶରେ ସହାୟକ ହୋଇଥିଲା ।

୧୯୩୧ରେ 'ସମାଜ' ସାପ୍ତାହିକରୁ ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇଥିଲା ଓ ପରେ ଡକ୍ଟର ରାଧାନାଥ ରଥଙ୍କ ସମ୍ପାଦନାରେ ଓଡ଼ିଶାର ସର୍ବବୃହତ୍ ତଥା ବହୁଳ ପ୍ରସାରିତ ସମ୍ବାଦପତ୍ର ଭାବରେ ସୁପ୍ରତିଷ୍ଠିତ ହେଲା । ଉତ୍କଳମଣିଙ୍କ ଉଇଲ୍

ବା ଇଚ୍ଛାପତ୍ର ଅନୁସାରେ ଲାଲା ଲଜ୍‌ପତ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଲୋକସେବକ ମଣ୍ଡଳ ଉପରେ 'ସମାଜ'ର ମାଲିକାନା ସ୍ୱତ୍ୱ ନ୍ୟସ୍ତ ହୋଇଛି ।

'ସମାଜ' ପ୍ରକାଶନ ବେଳକୁ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସାରିଥିଲା । ଏହି କାଳରେ 'ସମାଜ' ସ୍ୱାଧୀନତା ଆନ୍ଦୋଳନର ମୁଖପତ୍ର ଭାବରେ କାର୍ଯ୍ୟ କରୁଥିଲା । କିଛି ଦିନ ପରେ ପ୍ରେସ୍‌ଟି ପୁରୀରକୁ ଉଠିଯାଇଥିଲା ଏବଂ 'ସମାଜ' ପୁରୀରୁ ପ୍ରକାଶିତ ହେଉଥିଲା । ୧୯୨୭ ଜୁଲାଇ ମାସ ୨ ତାରିଖରୁ 'ସମାଜ' କଟକରୁ ପ୍ରକାଶିତ ହେଲା ।

ଏହି ସମୟରେ ପେଶାଦାର ସାମ୍ବାଦିକ ନ ଥିଲେ କିମ୍ବା ସମ୍ବାଦପତ୍ର ଏକ ଶିଳ୍ପ ଭାବରେ ପରିଗଣିତ ହେଉ ନ ଥିଲା । ୧୯୫୬ରେ ପଣ୍ଡିତ ଗୋଦାବରୀଶ ମିଶ୍ର 'ସମାଜ' ସମ୍ପର୍କରେ ଲେଖିଥିଲେ, ''ଆଜିକାଲି ସମ୍ବାଦପତ୍ର ସବୁ କୌଣସି ଦଳର ମୁଖପତ୍ର । କିନ୍ତୁ 'ସମାଜ'ର ଜନ୍ମ ସମୟରେ ଦେଶର ଏ ଅବସ୍ଥା ନ ଥିଲା । ଗୋପବନ୍ଧୁ ରାଜନୀତିକ କିମ୍ବା ଅନ୍ୟ କୌଣସି ଦଳକୁ ଜାଣି ନଥିଲେ । ଜାଣିଥିଲେ କେବଳ ଦେଶ । ଦେଶର ଶିକ୍ଷାବିସ୍ତାର ପାଇଁ ସେ ସତ୍ୟବାଦୀରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପନ କଲେ । ବିଶାଳ ନିରକ୍ଷର ଜନତାକୁ ଶିକ୍ଷା ଦେବା ନିମନ୍ତେ ସେହିପରି ଏକ ସମ୍ବାଦପତ୍ରର ଆବଶ୍ୟକତା ଅନୁଭବ କରିବାକୁ ଲାଗିଲେ । ଅର୍ଥର ଅଭାବ ଯୋଗେ ସେ ସେଦିଗରେ ଅଗ୍ରସର ହୋଇ ପାରୁ ନଥିଲେ । ସେଥିପାଇଁ ସତ୍ୟବାଦୀରେ ରହି ମଧ୍ୟ ବ୍ରହ୍ମପୁରରେ ଆଶା କାଗଜର ସମ୍ପାଦନା ଗ୍ରହଣ କଲେ । କିନ୍ତୁ ସେଥିରେ ତାଙ୍କର ଉଦ୍ଦେଶ୍ୟ ସାଧିତ ହେଉ ନ ଥିବା ଦେଖି ସେ ଅତି ସାମାନ୍ୟ ମୂଳଧନରେ ସାପ୍ତାହିକ ସମାଜ ବାହାର କଲେ ।

ପରବର୍ତ୍ତୀ କାଳରେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ଓଡ଼ିଶାର ଜନଜୀବନକୁ ପ୍ରଭାବିତ କଲା । 'ପ୍ରଜାତନ୍ତ୍ର' ପ୍ରଥମେ କଟକରେ ମୁକୁର ପ୍ରେସ୍‌ରେ ମୁଦ୍ରିତ ହୋଇ ସାପ୍ତାହିକ ଭାବରେ ପ୍ରକାଶିତ ହେଲା । କନିକା ପ୍ରଜା ଆନ୍ଦୋଳନକୁ ଏହା ତେଜାଇ ରଖିଥିଲା । ଏହାର ପ୍ରକାଶକ ଓ ମୁଦ୍ରାକର ଥିଲେ ଜାତୀୟ କବି ବୀର କିଶୋର ଦାସ ।

ପରେ ଏହା ବାଲେଶ୍ୱର ଟାଉନ୍ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଲା । ଏହି ସମୟରେ ଡକ୍ଟର ମହତାବ 'ଆଡ଼ଭେଞ୍ଚର' ନାମକ ଏକ ଇଂରାଜୀ ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ । ଲବଣ ସତ୍ୟାଗ୍ରହ ସମୟରେ 'ପ୍ରଜାତନ୍ତ୍ର' ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲା । ବହୁ ବାଧାବିଘ୍ନ ପରେ ଏହା ବନ୍ଦ ହୋଇଯାଇଥିଲା ।

ଡକ୍ଟର ମହତାବ 'ସମାଜ' ସମ୍ବାଦପତ୍ରର ସମର୍ଥନ ନ ପାଇବାରୁ ପ୍ରାୟ ୧୫ ବର୍ଷ କାଳ ବନ୍ଦ ଥିବା 'ପ୍ରଜାତନ୍ତ୍ର' ପୁଣି ୧୯୪୭ ଅଗଷ୍ଟ ମାସ ୯ ତାରିଖରୁ କଟକର ଦାଶରଥି ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଲା । ୧୯୪୭ ନଭେମ୍ବର ୧୪ରେ ପ୍ରଜାତନ୍ତ୍ରର ନିଜସ୍ୱ ପ୍ରେସ୍ ପ୍ରତିଷ୍ଠିତ ହେଲା । ପ୍ରଜାତନ୍ତ୍ର ପ୍ରେସ୍ ପ୍ରତିଷ୍ଠା ଲାଗି ମୋତିଲାଲ ପଣ୍ଡିତ ଏକ ଜାଗା ଦାନ କରିଥିଲେ । ଏହା ବିହାରୀବାଗ୍ ନାମରେ ପରିଚିତ । ପରେ ଡକ୍ଟର ମହତାବ ଇଂରାଜୀ ଦୈନିକ ସମ୍ବାଦପତ୍ର 'ଦି ଇଷ୍ଟର୍ଣ୍ଣ ଟାଇମ୍‌ସ' ପ୍ରକାଶ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ଅଧ୍ୟକ୍ଷତାରେ ଗଠିତ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଝଙ୍କାର, ମୀନାବଜାର ପ୍ରଜାତନ୍ତ୍ର ସାପ୍ତାହିକୀ ଓ ପ୍ରତିଭାର ପ୍ରକାଶନ ବିଭିନ୍ନ ସମୟରେ ହେଲା । ଦୈନିକ 'ଦି ଇଷ୍ଟର୍ଣ୍ଣ ଟାଇମ୍‌ସ' ବନ୍ଦ ହେବା ପରେ ପୁଣି ସାପ୍ତାହିକ ଓ ପରେ ପୁନରାୟ ଦୈନିକ ଭାବରେ ପ୍ରକାଶିତ ହୋଇ ବନ୍ଦ ହୋଇଗଲା ।

୧୯୨୧-୨୨ରେ 'ସ୍ୱରାଜ' ସାପ୍ତାହିକୀ ପ୍ରକାଶ ପାଇଲା । ୧୯୩୨ରୁ ଏହା ଦୈନିକ ସମ୍ବାଦପତ୍ରରେ ପରିଣତ ହେଲା । ୧୯୪୧ରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦନାରେ ଦୈନିନ 'ନବଭାରତ' ପ୍ରକାଶ ପାଇଲା । ତାଙ୍କ ସମ୍ପାଦନାରେ ମାସିକ ସାହିତ୍ୟ ପତ୍ରିକା ନବଭାରତ ମଧ୍ୟ ପ୍ରକାଶିତ ହୋଇଥିଲା । ୧୯୪୫-୪୬ରେ କେ.ଏନ୍, ଆଚାରୀଙ୍କ ସମ୍ପାଦନାରେ 'ଓଡ଼ିଶା ଫାଷ୍ଟ' ଏବଂ ମଧୁ ମହାନ୍ତିଙ୍କ ସମ୍ପାଦନାରେ 'ଅବଜର୍‌ଭର' ପ୍ରକାଶ ପାଇଥିଲା ।

୧୯୪୭ରେ ସାପ୍ତାହିକ 'ଗଣତନ୍ତ୍ର' ପ୍ରକାଶ ପାଇଥିଲା ଓ ୧୯୫୬ରେ ଏହି ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇ ୫ ବର୍ଷ ପରେ ବନ୍ଦ ହୋଇଯାଇଥିଲା । ବର୍ଷୀୟାନ୍ ଭାଷା ସାହିତ୍ୟକାର ସୁରେନ୍ଦ୍ର ମହାନ୍ତି ଏହାର ସମ୍ପାଦକ ଥିଲେ । ପୁନର୍ବାର ୧୯୬୬ରୁ ଏହି ସମ୍ବାଦପତ୍ର 'ସ୍ୱରାଜ୍ୟ' ନାମରେ ଆତ୍ମପ୍ରକାଶ କଲା । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେବ ଏହାର ମୁଖ୍ୟ ପୃଷ୍ଠପୋଷକ ଥିଲେ । ସେ ରାଜ୍ୟ ବିଧାନସଭାରେ ବିରୋଧୀ ଦଳ ନେତା ତଥା ରାଜ୍ୟ ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିଲେ ।

୧୯୫୧ରେ ଦ୍ୱି-ସାପ୍ତାହିକୀ ଭାବରେ ବାଳକୃଷ୍ଣ କରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ପରେ ଏହା ଏକ ଦୈନିକ ସମ୍ବାଦପତ୍ରରେ ପରିଣତ ହେଲା । ଏହି ସଂସ୍ଥା ପକ୍ଷରୁ ପରେ ମାସିକ ସାହିତ୍ୟ ପତ୍ରିକା 'ସହକାର' ମଧ୍ୟ ପ୍ରକାଶ ପାଇଲା ।

୧୯୬୦ରେ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ମନମୋହନ ମିଶ୍ରଙ୍କ ସମ୍ପାଦନାରେ ଦୈନିକ କଳିଙ୍ଗ ପ୍ରକାଶ ପାଇଲା । ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ମଧ୍ୟ ରାଜନୀତି କ୍ଷେତ୍ରରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିୟୋଜିତ କରି ରାଜ୍ୟ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ତଥା ରାଜ୍ୟ ବିଧାନସଭାରେ ବିରୋଧୀଦଳ ନେତା ପଦରେ ଅଧିଷ୍ଠିତ ହେଲେ । ୧୯୬୬ରେ ବୀରେନ ମିତ୍ରଙ୍କ ଦ୍ୱାରା ଦୈନିକ 'ଜନଶକ୍ତି' ପ୍ରକାଶ ପାଇଲା । ଲୋକନାଥ ମିଶ୍ର ଏହାର ସମ୍ପାଦକ ଥିଲେ । ବୀରେନ ମିତ୍ର ମଧ୍ୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିଲେ । ଏଥି ପୂର୍ବରୁ ୧୯୬୫ରେ ଆର୍.ପି. ଶାସ୍ତ୍ରୀଙ୍କ ସମ୍ପାଦନାରେ ଇଂରାଜୀ ଦୈନିକ ସମ୍ବାଦପତ୍ର 'ଓଡ଼ିଶା ଟାଇମ୍ସ' ପ୍ରକାଶ ପାଇଥିଲା ।

ସମ୍ବଲପୁରରୁ ପଶ୍ଚିମାଞ୍ଚଳର ପ୍ରଥମ ଦୈନିକ ସମ୍ବାଦପତ୍ର 'କୋଶଳ' ୧୯୭୦ ବିଜୟା ଦଶମୀଠାରୁ ତ୍ରିବିକ୍ରମ ତ୍ରିପାଠୀଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ଏଥିପୂର୍ବରୁ ତାଙ୍କ ସମ୍ପାଦନାରେ ୧୯୬୪ରେ ଇଂରାଜୀ ପାକ୍ଷିକ 'ସ୍କଇକ୍' ପ୍ରକାଶ ପାଇଥିଲା ଓ ୧୯୬୬ରେ ସତ୍ୟବ୍ରତ ପ୍ରେସରୁ 'ପଞ୍ଚମୁଖୀ' ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା । ୧୯୮୧ରେ ଭୁବନେଶ୍ୱରରୁ ଦୈନିକ ଦିନଲିପିର ପ୍ରକାଶନ ଆରମ୍ଭ ହେଲା ଓ ଏହା ଏକ ନିରପେକ୍ଷ ସମ୍ବାଦପତ୍ର ଭାବରେ ପ୍ରତିଷ୍ଠିତ ହେଲା ।

୧୯୪୭ରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ଦ୍ୱାରା ଦୈନିକ ସମ୍ବାଦପତ୍ର 'ଧରିତ୍ରୀ'ର ପ୍ରକାଶନ ଆରମ୍ଭ ହେଲା ।

'ଦି ଇଷ୍ଟର୍ଣ୍ଣ ଟାଇମ୍ସ'ର ପ୍ରକାଶନ ବନ୍ଦ ହୋଇଯିବା ପରେ ଓଡ଼ିଶାରୁ ଆଉ ଏକ ଇଂରାଜୀ ଦୈନିକ ସମ୍ବାଦପତ୍ର ପ୍ରକାଶନର ଆବଶ୍ୟକତା ରହିଥିଲା । ପୁସ୍ତକ ପ୍ରକାଶକ ନବକିଶୋର ମହାପାତ୍ର 'ନିଉଜ୍ ଅଫ୍ ଦି ୱାର୍ଲଡ଼୍' ପ୍ରକାଶ କଲେ । ଏଥିସହ ତାଙ୍କ ଦ୍ୱାରା ପ୍ରକାଶିତ ହେଲା 'ମନପବନ', ଛାତ୍ରସାଥୀ, ଆଲୋକ, ସରଳା, ଉତ୍କଳ ସାହିତ୍ୟ, ଚିତ୍ରକଥା, ଦି କ୍ରିମ ଓ ସତକଥା ପ୍ରଭୃତି ସାମୟିକ ପତ୍ରିକା । ପ୍ରକାଶନ କ୍ଷେତ୍ରରେ ସେ ଏକ ବହୁମୁଖୀ ପ୍ରତିଭା ରୂପେ ପ୍ରତିଭାତ ହେଲେ ।

୧୯୭୨ରେ କଟକରୁ ସାପ୍ତାହିକ ଭାବରେ ପ୍ରକାଶିତ ହୋଇଥିବା 'ପ୍ରଗତିବାଦୀ' ୧୯୭୯ରୁ ଦୈନିକ ସମ୍ବାଦପତ୍ର ଭାବରେ ଭୁବନେଶ୍ୱରରୁ ପ୍ରକାଶ ପାଇଲା ।

୧୯୮୧ ଏପ୍ରିଲ ମାସ ୧୫ ତାରିଖରୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ହୀରାଖଣ୍ଡ ଟ୍ରଷ୍ଟ ଦ୍ୱାରା ଦୈନିକ 'ହୀରାଖଣ୍ଡ' ସମ୍ବଲପୁରରୁ ପ୍ରକାଶ ପାଇଲା । ଡକ୍ଟର ଶ୍ରଦ୍ଧାକର ସୁପକାର ଥିଲେ ଏହାର ପ୍ରଥମ ସମ୍ପାଦକ ।

୧୯୮୪ ଅକ୍ଟୋବର ୪ ତାରିଖ ବିଜୟାଦଶମୀଠାରୁ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ଦ୍ୱାରା ଦୈନିକ 'ସମ୍ବାଦ'ର ଆରମ୍ଭ ହେଲା । ସମ୍ବାଦପତ୍ର ପ୍ରକାଶନର ନୂତନ ପଦ୍ଧତି ଓ ଔଦ୍ୟୋଗିକ ଜ୍ଞାନକୌଶଳର ପ୍ରୟୋଗ ପୂର୍ବକ ଫଟୋଟାଇପ୍ ସେଟିଂରେ ଏହାର ମୁଦ୍ରଣ କାର୍ଯ୍ୟ ସମ୍ପନ୍ନ ହେଲା । ଏହା ଓଡ଼ିଶାର ସର୍ବପ୍ରଥମ ବ୍ୟବସାୟିକ ସମ୍ବାଦପତ୍ର । ପ୍ରଜାତନ୍ତ୍ର ପ୍ରଚାର ସମିତିର ଅଧ୍ୟକ୍ଷ ଡକ୍ଟର ହରେକୃଷ୍ଣ ମହତାବ ଏହାର ଶୁଭ ଉନ୍ମୋଚନ କରିଥିଲେ । ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍ ଦ୍ୱାରା 'ସମ୍ବାଦ' ପ୍ରକାଶନ ସାଙ୍ଗକୁ ଇଂରାଜୀ ଦୈନିକ 'ଦି ସନ୍ ଟାଇମ୍ସ' , 'କଥା', 'ଫୁଲଝରି', 'ସିନେ ସମ୍ବାଦ', 'ନବ ସମ୍ବାଦ' ଓ ଉର୍ଦ୍ଦୁ ଭାଷାରେ 'ସାହାର' ପ୍ରଭୃତି ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ପ୍ରକାଶନ ଜଗତରେ ଏହା ଏକ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହେଲା ।

ଭୁବନେଶ୍ୱରରୁ 'ଜନଭାଷା', କଳିଙ୍ଗ ମେଲ୍, ବାଲେଶ୍ୱରରୁ ରାଷ୍ଟ୍ରଦୂତ, ଆଜିକାଲି, ସମ୍ବଲପୁରରୁ ଅଗ୍ନିଶିଖା, ଡାକରା, ପ୍ରଥମେ ବଲାଙ୍ଗୀର ଓ ପରେ ରାଉରକେଲାରୁ ଯୁଗବାର୍ତ୍ତା, ରାଉରକେଲା ଓ କଟକରୁ କୁରୁକ୍ଷେତ୍ର, ମାତୃଭାଷା, ଚୌଦ୍ୱାରରୁ ଦହନ ଓ ଆଠଗଡ଼ରୁ ନ୍ୟାୟବତୀ ପ୍ରଭୃତି ସମ୍ବାଦପତ୍ର ବିଭିନ୍ନ ସମୟରେ ପ୍ରକାଶ ପାଇଲା । ରାଉରକେଲାରୁ ହିନ୍ଦୀ ଦୈନିକ 'ଯୁଗବୃତ୍ତାନ୍ତ' ଓ କେତେକ ହିନ୍ଦୀ ସାପ୍ତାହିକୀ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରକାଶିତ ହେଲା ।

ବିଭିନ୍ନ ଦୈନିକ ସମ୍ବାଦପତ୍ରର ପ୍ରକାଶନ ସାଙ୍ଗକୁ ଭଞ୍ଜପ୍ରଦୀପ (୧୯୩୪), ମୟୂରଭଞ୍ଜ କ୍ରନିକଲ (୧୯୩୫), ଜାଗରଣ, ବାରିପଦା ମୟୂରଭଞ୍ଜ ଗ୍ୟାଜେଟ (୧୯୩୬), ଶଙ୍ଖ (୧୯୪୫), ପ୍ରଜାଶକ୍ତି, ଜୀବନ, ମେହେର ପ୍ରଦୀପ ସୁବ୍ରତୀ (୧୯୫୮) ପ୍ରଭୃତି ପତ୍ରପତ୍ରିକା ଓଡ଼ିଶାରେ ସମ୍ବାଦପତ୍ରର ବିକାଶଧାରାକୁ ଅବ୍ୟାହତ ରଖିଥିଲା ।

ପୌରୁଷ, ଆସନ୍ତାକାଲି, ନବରବ, ବର୍ତ୍ତମାନ, ଜନସଖା, ନିଆଁଖୁଣ୍ଟ, ଦୁର୍ମୁଖ, ନବଲିପି, ସୁନାପିଲା, ଟିକି ଦୁନିଆ, ଜନନୀ, ଗଣବାର୍ତ୍ତା, ଗଣ ଇସ୍ତାହାର, ମୁକ୍ତଦିଶା, ସ୍ୱତନ୍ତ୍ର, ସାପ୍ତାହିକ ଟିଭଜଡ଼େ, ସୌରଭ, ହରିବୋଲ, ଅବତାର, ନୂଆଁ ଦୁନିଆ, ପ୍ରଜାମିତ୍ର, ଦୁନିଆଁ, ସର୍ବହରା, ରୁଦ୍ରଆହ୍ୱାନ ଓ ଡିବ୍‌ଡ଼ିବ ପ୍ରଭୃତି ମାସିକ ଓ ସାମୟିକ ପତ୍ରପତ୍ରିକା ଭିନ୍ନ ଭିନ୍ନ ସମୟରେ କୃତିତ୍ୱର ସ୍ୱାକ୍ଷର ବହନ କରିଛି । ବେଳା, ଆଭା ଇତ୍ୟାଦି ପତ୍ରିକା ସାହିତ୍ୟ ଜଗତକୁ ଉଦ୍‌ବେଳିତ କରିଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୫୧ରେ ଓଡ଼ିଶାର ପ୍ରଥମ ଚଳଚ୍ଚିତ୍ର ପତ୍ରିକା 'ସିନେ ଓଡ଼ିଶା' ବ୍ରହ୍ମପୁରରେ ପ୍ରକାଶିତ

ହୋଇଥିଲା ଓ ଏହାପରେ ଓଡ଼ିଶାରେ ଚଳଚ୍ଚିତ୍ର ସାମ୍ବାଦିକତାର ବିକାଶ ଘଟିଲା । ପରବର୍ତ୍ତୀ କାଳରେ କଟକରୁ ସୁବାସ ଭାଟିଆଙ୍କ ଦ୍ୱାରା 'ଚଳଚ୍ଚିତ୍ର ଜଗତ' ଭଳି ଉଚ୍ଚକୋଟିର ଚଳଚ୍ଚିତ୍ର ପତ୍ରିକା ପ୍ରକାଶ ପାଇଥିଲା ।

ସାଂପ୍ରତିକ କାଳରେ ବହୁ ସଂଖ୍ୟକ ଦୈନିକ ସମ୍ବାଦପତ୍ର ତଥା ସାମୟିକ ପତ୍ରପତ୍ରିକା ରାଜ୍ୟର ବିଭିନ୍ନ ଅଞ୍ଚଳରୁ ପ୍ରକାଶ ପାଉଛି । ସେସବୁର ନାମୋଲ୍ଲେଖ ସମ୍ଭବ ନୁହେଁ । ତେବେ ସମ୍ବାଦପତ୍ର ପ୍ରକାଶନର ଧାରାକୁ ଜାଣିବା ନିମନ୍ତେ ଆବଶ୍ୟକୀୟ ତଥ୍ୟମାତ୍ର ଉପସ୍ଥାପନ କରାଯିବାର ପ୍ରାସଙ୍ଗିକତା ରହିଛି ।

ଇତିମଧ୍ୟରେ ବିଭିନ୍ନ ଓଡ଼ିଆ ଦୈନିକ ସମ୍ବାଦପତ୍ରର ଏକାଧିକ ସଂସ୍କରଣ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ରାଜ୍ୟ ବାହାରୁ ପ୍ରକାଶିତ ହେବା ସହ ଅନେକ ଇଂରାଜୀ ତଥା ହିନ୍ଦୀ ଦୈନିକର ଓଡ଼ିଶା ସଂସ୍କରଣ ମଧ୍ୟ ପ୍ରକାଶ ପାଇ ଓଡ଼ିଶାର ସମ୍ବାଦପତ୍ର ପ୍ରକାଶନ ଧାରାକୁ ବିକଶିତ କରିଛି ।

ଭୁବନେଶ୍ୱରରୁ 'ସୂର୍ଯ୍ୟପ୍ରଭା', ଓଡ଼ିଶା ଭାସ୍କର, ଖବର, ସର୍ବ ସାଧାରଣ, ପ୍ରତିଦିନ ପ୍ରଭୃତି ସମ୍ବାଦପତ୍ର ପ୍ରକାଶ ପାଇ ପାଠକମାନଙ୍କର ଧ୍ୟାନ ଆକର୍ଷଣ କରିଛି । ସୁମାରିଏଲ ମିଡ଼ିଆ ପ୍ରା. ଲିଃ ପକ୍ଷରୁ ଦୈନିକ 'ପ୍ରମେୟ' ପ୍ରକାଶିତ ହୋଇ ସ୍ୱଳ୍ପକାଳ ମଧ୍ୟରେ ଲୋକପ୍ରିୟତା ହାସଲ କରିଛି । ଏଥିସହ ପ୍ରକାଶିତ ହେଉଛି ପ୍ରମେୟ ପତ୍ରିକା । ଅଧୁନା ସମସ୍ତ ବଡ଼ ବଡ଼ ସମ୍ବାଦପତ୍ର ରବିବାର ଦିନ ବିଶେଷାଙ୍କ ଅଥବା ଏକ ସ୍ୱତନ୍ତ୍ର ପତ୍ରିକା ପ୍ରକାଶ କରୁଛନ୍ତି । ଏଗୁଡ଼ିକ ପାଠକୀୟ ଆଦୃତି ଲାଭ କରିଛି । ମାସିକ ପତ୍ରିକା ମଧ୍ୟରେ କାଦମ୍ବିନୀ ଓଡ଼ିଆ ପ୍ରା. ଲି. ପକ୍ଷରୁ ପ୍ରକାଶିତ କାଦମ୍ବିନୀ ଲୋକପ୍ରିୟତାର ଶୀର୍ଷରେ ରହିଛି । ଇଂରାଜୀ ଦୈନିକ 'ଓଡ଼ିଶା ପୋଷ୍ଟ' ପ୍ରକାଶିତ ହୋଇ ଓଡ଼ିଶାର ଇଂରାଜୀ ସମ୍ବାଦପତ୍ର ଭାବରେ ପାଠକୀୟ ଚାହିଦା ପୂରଣ ନିମନ୍ତେ ଅଗ୍ରସର ହେଉଛି ।

କେନ୍ଦ୍ର ସରକାରଙ୍କ ଦ୍ୱାରା 'ଯୋଜନା' ଏବଂ 'ସୈନିକ ସମାଚାର'ର ଓଡ଼ିଆ ସଂସ୍କରଣ ପ୍ରକାଶ ପାଉଛି । ଏଥି ସହ 'ସନଡେ ଇଣ୍ଡିଆନ' ମଧ୍ୟ ଓଡ଼ିଆ ଭାଷାରେ ପ୍ରକାଶ ପାଉଛି । ନିକଟରେ ଯୁକ୍ତରାଷ୍ଟ୍ର ଆମେରିକାରେ ମଧ୍ୟ ଓଡ଼ିଆ ସାହିତ୍ୟ ପତ୍ରିକାର ପ୍ରକାଶନ ଆରମ୍ଭ ହୋଇଛି ।

ଅନେକ ସମ୍ବାଦପତ୍ର ଆମ ରାଜ୍ୟରେ ବିଭିନ୍ନ ସମୟରେ ପ୍ରକାଶପାଇ ଅକାଳରେ ବନ୍ଦ ହୋଇଯାଇଥିଲେ ମଧ୍ୟ ସିଦ୍ଧିର ସ୍ୱାକ୍ଷର ପ୍ରଦାନ କରିଛନ୍ତି । ପୂର୍ବେ ଓଡ଼ିଶାରେ ମୁଦ୍ରଣଶିଳ୍ପର ଆବଶ୍ୟକୀୟ ବିକାଶ ଘଟି ନଥିବାରୁ ବହୁ ବାଧା ବିଘ୍ନ ମଧ୍ୟରେ ପତ୍ରପତ୍ରିକା ସମୂହ ପ୍ରକାଶ ପାଇଛି । ଏଭଳି ଅବସ୍ଥା ମଧ୍ୟରେ ଯେଉଁମାନେ ପ୍ରୟାସ ଜାରି ରଖିଥିଲେ, ସମସ୍ତେ ସ୍ମରଣୀୟ ।

ଓଡ଼ିଶାର ଅଧିକାଂଶ ସମ୍ବାଦପତ୍ର ରାଜନୀତିକ ବ୍ୟକ୍ତି ବିଶେଷ ଟ୍ରଷ୍ଟ ଅଥବା ସୋସାଇଟି ଦ୍ୱାରା ପ୍ରକାଶିତ । ପୁନଶ୍ଚ ଉକ୍ତ ଟ୍ରଷ୍ଟ ଅଥବା ସୋସାଇଟି ରାଜନୀତିକ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ନିୟନ୍ତ୍ରିତ । ତେଣୁ ସଂପୃକ୍ତ ରାଜନୈତିକ ବ୍ୟକ୍ତି ବିଶେଷଙ୍କ ରାଜନୈତିକ ସ୍ୱାର୍ଥ ଓ କାର୍ଯ୍ୟକଳାପର ପ୍ରତିଫଳନ ଅଧିକାଂଶ ଓଡ଼ିଆ ସମ୍ବାଦପତ୍ରର ଧର୍ମରେ ପରିଣତ ହୋଇଛି ।

ଓଡ଼ିଶାରେ ସମ୍ବାଦପତ୍ର ସଂଖ୍ୟା କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ୧୯୮୩ ଏପ୍ରିଲ ଶେଷସୁଦ୍ଧା ରାଜ୍ୟର ମୋଟ ୧୭ଟି ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା । ପରବର୍ତ୍ତୀ ପାଞ୍ଚବର୍ଷ ମଧ୍ୟରେ ଆଉ ୧୧ଟି ନୂତନ ସମ୍ବାଦପତ୍ର ପ୍ରକାଶିତ ହେଲା । ବର୍ତ୍ତମାନ ରାଜ୍ୟ ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗ ଦ୍ୱାରା ସ୍ୱୀକୃତିପ୍ରାପ୍ତ ୫୪ଟି ଦୈନିକ ସମ୍ବାଦପତ୍ର ସାଙ୍ଗକୁ ୬୯ଟି ସାପ୍ତାହିକ, ପାକ୍ଷିକ ତଥା ମାସିକ ପତ୍ରିକା ପ୍ରକାଶ ପାଉଛି । ଅନେକ ସମ୍ବାଦପତ୍ର ଓ ସାମୟିକ ପତ୍ରିକାକୁ ସରକାରୀ ସ୍ୱୀକୃତି ମିଳି ନାହିଁ । ତେବେ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଶତାଧିକ ଦୈନିକ ସମ୍ବାଦପତ୍ର ପ୍ରକାଶ ପାଉଥିବା ଜଣାଯାଉଛି ।

ଓଡ଼ିଶାରେ ପ୍ରକାଶିତ ହେଉଥିବା ସମ୍ବାଦପତ୍ର ତଥା ପତ୍ରପତ୍ରିକାରେ ପ୍ରସାରଣ ସଂଖ୍ୟା କ୍ରମେ ମନ୍ଥରଗତିରେ ବୃଦ୍ଧି ପାଉଛି । ୧୯୫୭ ସୁଦ୍ଧା ରାଜ୍ୟର ମୋଟ ୫୧ ହଜାର ୬୩୯ଟି ଗ୍ରାମ ପାଇଁ ଖଣ୍ଡିଏ ଲେଖାଏ ସମ୍ବାଦପତ୍ର ମଧ୍ୟ ପ୍ରକାଶିତ ହେଉ ନ ଥିଲା । ତେବେ ୧୯୮୩ ବେଳକୁ ପ୍ରତିଗ୍ରାମ ପାଇଁ ହାରାହାରି ତିନିଖଣ୍ଡ ଲେଖାଏଁ ସମ୍ବାଦପତ୍ର ପ୍ରକାଶିତ ହେଉଥିଲା ବୋଲି ଜଣାଯାଏ ।

୧୯୭୬ ଓ ୧୯୭୭ ବର୍ଷର ପ୍ରସାରଣ ସଂଖ୍ୟା ସମ୍ପର୍କରେ ୫୦ଟି ପତ୍ରପତ୍ରିକା ଓ ସମ୍ବାଦପତ୍ର ସଂକ୍ରାନ୍ତ ତଥ୍ୟ ମିଳିଥିଲା ଏବଂ ଉକ୍ତ ତଥ୍ୟରୁ ଜଣାଯାଇଥିଲା ଯେ, ବର୍ଷକ ମଧ୍ୟରେ ପ୍ରସାରଣ ସଂଖ୍ୟାରେ ଶତକଡ଼ା ୧୪ ଭାଗ ବୃଦ୍ଧି ଘଟିଥିଲା । ୧୯୭୭ରେ ସମଗ୍ର ଓଡ଼ିଶାରେ ୧୧ଟି ଦୈନିକ, ୨୫ଟି ସାପ୍ତାହିକ, ଗୋଟିଏ ଦ୍ୱି-ସାପ୍ତାହିକ ଏବଂ ୧୫୨ଟି ଅନ୍ୟାନ୍ୟ ସାମୟିକ ପତ୍ରିକା ପ୍ରକଶ ପାଉଥିଲା । ଏହି ସମୟ ସୁଦ୍ଧା ଓଡ଼ିଶାର କୌଣସି ସମ୍ବାଦପତ୍ରର ପ୍ରସାରଣ ସଂଖ୍ୟା ଏକ ଲକ୍ଷକୁ ପହଞ୍ଚି ପାରି ନ ଥିଲା । ଉକ୍ତ ବର୍ଷ ଶେଷସୁଦ୍ଧା ସମସ୍ତ ଓଡ଼ିଆ ଦୈନିକ ସମ୍ବାଦପତ୍ରର ମିଳିତ ପ୍ରସାରଣ

ସଂଖ୍ୟା ୧ ଲକ୍ଷ ୨୭ ହଜାର, ସାପ୍ତାହିକଗୁଡ଼ିକର ପ୍ରସାରଣ ସଂଖ୍ୟା ୧୭ ହଜାର ତଥା ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକାର ପ୍ରସାରଣ ସଂଖ୍ୟା ୧ ଲକ୍ଷ ୧୫ ହଜାର ଥିଲା । ମୋଟ ପ୍ରସାରଣ ସଂଖ୍ୟା ଥିଲା ୨ ଲକ୍ଷ ୫୯ ହଜାର ।

୧୯୮୨ରେ ୧୩ଟି ଦୈନିକ ସମ୍ବାଦପତ୍ର, ୪୩ଟି ସାପ୍ତାହିକ ଏବଂ ୨୭୫ଟି ଅନ୍ୟାନ୍ୟ ସାମୟିକ ପତ୍ରପତ୍ରିକା ପ୍ରକାଶ ପାଉଥିଲା । ଉକ୍ତ ବର୍ଷ ଶେଷସୁଦ୍ଧା ଦୈନିକ ସମ୍ବାଦପତ୍ରଗୁଡ଼ିକର ମିଳିତ ପ୍ରସାରଣ ସଂଖ୍ୟା ୨ ଲକ୍ଷ ୫ ହଜାର ଥିଲା । ସାପ୍ତାହିକଗୁଡ଼ିକର ପ୍ରସାରଣ ସଂଖ୍ୟା ୨୯ ହଜାର, ମାସିକ ପତ୍ରିକାଗୁଡ଼ିକର ପ୍ରସାରଣ ସଂଖ୍ୟା ୧ ଲକ୍ଷ ୮୮ ହଜାର, ପାକ୍ଷିକଗୁଡ଼ିକର ପ୍ରସାରଣ ସଂଖ୍ୟା ୨୧ ହଜାର ଏବଂ ତ୍ରୟମାସିକଗୁଡ଼ିକର ପ୍ରସାର ସଂଖ୍ୟା ୧୮ ହଜାର ଥିଲା । ମୋଟ ପ୍ରସାରଣ ସଂଖ୍ୟା ଥିଲା ୪ ଲକ୍ଷ ୬୧ ହଜାର ।

ପ୍ରତିଯୋଗିତାମୂଳକ ବଜାରରେ ଉଧେଇ ପାରିବା ଭଳି ଅବସ୍ଥା ଓଡ଼ିଆ ସମ୍ବାଦପତ୍ରର ଆସି ନଥିଲା । ଲୋକଙ୍କ ସମସ୍ୟାବଳୀ ସମ୍ବାଦପତ୍ରଗୁଡ଼ିକର ଯଥାଯଥ ଭାବରେ ପ୍ରତିଫଳିତ ହେଉ ନଥିବାରୁ ଲୋକଙ୍କ ମଧ୍ୟରେ ବିଶେଷତଃ ଗ୍ରାମାଞ୍ଚଳରେ ସମ୍ବାଦପତ୍ରଗୁଡ଼ିକ ପହଞ୍ଚି ପାରି ନ ଥିଲା । ଉଦାହରଣ ସ୍ୱରୂପ ରାଜ୍ୟର ଶତକଡ଼ା ୮୦ ଭାଗ ଲୋକ କୃଷି ଉପରେ ନିର୍ଭର କରୁଥିଲେ ମଧ୍ୟ ଅଧିକାଂଶ ସମ୍ବାଦପତ୍ରରେ କୃଷି ସମ୍ବାଦ ଉପରେ ଗୁରୁତ୍ୱାରୋପ କରାଯାଉ ନାହିଁ ଅଥବା ଏଥିଲାଗି ସ୍ୱତନ୍ତ୍ର ସ୍ତମ୍ଭ କିମ୍ବା ପୃଷ୍ଠା ପ୍ରକାଶ ପାଉ ନାହିଁ । ସଂପ୍ରତି ସମ୍ବାଦପତ୍ରଗୁଡ଼ିକ ଏ ଦିଗରେ ଉଦ୍ୟମ ଆରମ୍ଭ କରିଛନ୍ତି । କ୍ରମେ ସମ୍ବାଦପତ୍ରର ମୁଦ୍ରଣ ପରିପାଟିରେ ଉନ୍ନତି ପରିଲକ୍ଷିତ ହେଉଛି ।

ଏଭଳି ପରିସ୍ଥିତିରେ ଅଧିକାଂଶ ସମ୍ବାଦପତ୍ର ବିଜ୍ଞାପନ ଉପରେ ବିଶେଷତଃ ସରକାରୀ ବିଜ୍ଞାପନ ଉପରେ ନିର୍ଭରଶୀଳ । ବିଭିନ୍ନ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ତଥା ବେସରକାରୀ ବାଣିଜ୍ୟିକ ସଂସ୍ଥାର ବିଜ୍ଞାପନ ମଧ୍ୟ କ୍ରମେ ବୃଦ୍ଧି ପାଉଛି । କେବଳ ବିକ୍ରୟଲବ୍ଧ ଧନରୁ ସମ୍ବାଦପତ୍ର ପରିଚାଳନା ଏକ କାଠିକର ପାଠରେ ପରିଣତ ହୋଇଛି । ଫଳରେ 'ଧଳାକେଶ କଳାକର', 'ବୃଦ୍ଧମାନେ ଯୁବକ ହୁଅ', 'ଅଙ୍ଗପ୍ରତ୍ୟଙ୍ଗ ବୃଦ୍ଧି କର', 'ରାତି ଆସିଲେ ଚିନ୍ତା ନାହିଁ', ପରି ବିଜ୍ଞାପନ ଅବାଧରେ ପ୍ରକାଶିତ ହେଉଛି । ତେଣୁ ବିଜ୍ଞାପନ ସମ୍ପର୍କରେ କଥିତ ଅଛି । "Advertising is 85% confusion and 15% commission".

ସମ୍ବାଦପତ୍ର ଓ ସାମ୍ବାଦିକତାର ବିକାଶ କ୍ଷେତ୍ରରେ ରାଜ୍ୟ ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗର ମଧ୍ୟ ଗୁରୁଦାୟିତ୍ୱ ଓ ଅବଦାନ ରହିଛି । ସରକାର ଓ ଗଣମାଧ୍ୟମ ମଧ୍ୟରେ ସଂଯୋଗ ରକ୍ଷା, ସାମ୍ବାଦିକମାନଙ୍କୁ ଅଧିସ୍ୱୀକୃତି ପ୍ରଦାନ, ସମ୍ବାଦପତ୍ରଗୁଡ଼ିକୁ ସମ୍ବାଦ, ଫଟୋ ଓ ସରକାରୀ ବିଜ୍ଞାପନ, ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ ଓ ପ୍ରଦର୍ଶନ, ସଭାସମିତିର ଆୟୋଜନ ଓ ପ୍ରଚାର ପୁସ୍ତିକା ପ୍ରକାଶନ ଓ ବିତରଣ ଏହି ବିଭାଗର ପ୍ରମୁଖ କାର୍ଯ୍ୟ । ଏହି ବିଭାଗ କର୍ତ୍ତୃକ ରାଜ୍ୟ ସରକାରଙ୍କର ନିଜସ୍ୱ ପତ୍ରିକା ଓଡ଼ିଆ ଭାଷାରେ ଉତ୍କଳ ପ୍ରସଙ୍ଗ ଓ ଇଂରାଜୀ ଭାଷାରେ 'ଓଡ଼ିଶା ରିଭ୍ୟୁ' ପ୍ରକାଶିତ ହୋଇଥାଏ । ଏବେ ଇଣ୍ଟରନେଟ ମାଧ୍ୟମରେ ଦୈନନ୍ଦିନ ସମ୍ବାଦ ପରିବେଷଣ ମଧ୍ୟ କରାଯାଉଛି ।

ସମ୍ବାଦପତ୍ର କ୍ରମେ ଜନସାଧାରଣରେ ସ୍ଥାୟୀ ପ୍ରଭାବ ବିସ୍ତାର କରି ଚାଲିଛି । ଟେଲିଭିଜନର ବ୍ୟାପକ ପ୍ରସାର ଯୋଗୁଁ ସମ୍ବାଦପତ୍ରର ବିକାଶ ବାଧାପ୍ରାପ୍ତ ହେବ ବୋଲି ଯେଉଁ ଆଶଙ୍କା ପ୍ରକାଶ ପାଉଥିଲା, ତାହା ଅମୂଳକ ପ୍ରମାଣିତ ହୋଇଛି । ମୁଦ୍ରିତ ଗଣମାଧ୍ୟମରେ ଗତିରୋଧ ହୋଇନାହିଁ । ଅପର ପକ୍ଷରେ ଟେଲିଭିଜନର ଆଦୃତ କ୍ରମବର୍ଦ୍ଧମାନ ହୋଇଥିବାବେଳେ ବେତାର ପ୍ରସାରଣ ଶିଥିଳ ହୋଇପଡ଼ିଛି । ତେବେ ଏହା ମଧ୍ୟ ପ୍ରତ୍ୟାଖ୍ୟାତ ହୋଇନାହିଁ । ପ୍ରତ୍ୟେକ ଗଣମାଧ୍ୟମ ନିଜ ନିଜ କ୍ଷେତ୍ରରେ କାର୍ଯ୍ୟରତ ରହି ଦକ୍ଷତାର ପ୍ରତିପାଦନ ନିମନ୍ତେ ପ୍ରୟାସ ଚଳାଇଛନ୍ତି । ଏହି ଧାରା ଅବ୍ୟାହତ ରହିବାର ସ୍ପଷ୍ଟ ସୂଚନା ଉପଲବ୍ଧ ।

ବରିଷ୍ଠ ସାମ୍ବାଦିକ
ସମ୍ବଲପୁର-୭୬୮୦୦୩



# ଦେଶର ବିକାଶରେ ଗଣମାଧ୍ୟମର ଅବଦାନ

ବିପିନ ବିହାରୀ ମହାନ୍ତି

ସଂବାଦ ସଂଗ୍ରହ ଏବଂ ତା'ର ପରିବେଷଣର ଇତିହାସ ମଣିଷର ଇତିହାସ ପରି ଅତି ପ୍ରାଚୀନ । କେବଳ ଏହାର ମାଧ୍ୟମଗୁଡ଼ିକ ସମୟାନୁକ୍ରମେ ପରିବର୍ତ୍ତିତ ହୋଇ ଚାଲିଛି । ମଣିଷର ସୃଷ୍ଟିଠାରୁ ତା'ର ଯେପରି ଉଦ୍‌ବର୍ତ୍ତନ ପ୍ରକ୍ରିୟାରେ ପରିବର୍ତ୍ତନ ଘଟିଚାଲିଛି, ସେହିପରି ସମ୍ବାଦ ସଂଗ୍ରହ ଏବଂ ତା'ର ପରିବେଷଣରେ ଉଦ୍‌ବର୍ତ୍ତନ ଘଟିଚାଲିଛି । ଯେଉଁ ସଂସ୍ଥା ବା ବ୍ୟକ୍ତି ଏହି ପ୍ରକାର କାର୍ଯ୍ୟ ନିର୍ବାହ ସହ ସଂପୃକ୍ତ ଥାଆନ୍ତି ତାକୁ ଗଣମାଧ୍ୟମ କୁହାଯାଏ । ଏହା ଏପରି ଏକ ବ୍ୟବସ୍ଥା ଯାହା ରାଷ୍ଟ୍ର, ସମାଜ ଓ ବ୍ୟକ୍ତିଙ୍କୁ ସମ୍ପର୍କିତ ଏବଂ ସମ୍ବନ୍ଧିତ କରିଥାଏ । ଏହା ସାମାଜିକ ଓ ରାଷ୍ଟ୍ରୀୟ ଏବଂ ବ୍ୟକ୍ତିଗତ ଜୀବନର ବିକାଶ ଓ କଲ୍ୟାଣ ଲାଗି ସହାୟକ ହୋଇଥାଏ ।

ଆଗକାଳରେ ଗଣ ମାଧ୍ୟମର ବ୍ୟବସ୍ଥା ଅର୍ଥାତ୍ ସଂବାଦ ସଂଗ୍ରହ ଓ ତା'ର ବିତରଣ ଯେପରି ଥିଲା, ଏବେ ସେପରି ନାହିଁ । ଏହାର ଅର୍ଥ ଏହି ଯେ ପ୍ରାଗ୍ ଐତିହାସିକ ଯୁଗରେ ସଂବାଦ ସଂଗ୍ରହକାରୀ ସମ୍ବାଦଟି ଯେଉଁଠି ପ୍ରଚାର କରୁଥିଲା ସେହିଠାରୁ ତୁଣ୍ଡରୁ ତୁଣ୍ଡ ହୋଇ ଏହାର ବ୍ୟାପକ ପ୍ରଚାର ଓ ପ୍ରସାର ଘଟୁଥିଲା ।

ପୁରାତନ କାଳରେ ମଣିଷର ଯେତେବେଳେ ଭାଷା ନ ଥିଲା ସେଠି ସମ୍ବାଦ ପରିବେଷଣ ପାଇଁ ଯେଉଁ ମାଧ୍ୟମ ଥିଲା, ତାହା କିଛି ସଂକେତ, ଚିତ୍ର ବା ସ୍ୱରାବୃତ୍ତି । ଏହାକୁ ଆମେ ସାହିତ୍ୟିକ ଭାଷାରେ କହୁ ଶିକାରୀ ସାହିତ୍ୟ । ପରେ ପରେ ବାଜାବଜାଇ, ନିଆଁ ଜାଳି ଅଥବା କିଛିଟା ଭାବ ଓ ଭଙ୍ଗୀର ମାଧ୍ୟମରେ ବିପଦ ବା ଆପଦ ସମ୍ବାଦ ପଠାଉଥିଲା । ଭାଷା ଓ ଲିପିର ସୃଷ୍ଟିପରେ ଏହାର ସଂଗ୍ରହ, ପ୍ରଚାର ଓ ପ୍ରସାର ଭିନ୍ନ ରୂପ ନେଇ ସାରିଛି । ଭାଷାର ସୃଷ୍ଟିପରେ ଏହା କଥିତ ଭାଷାରେ ପ୍ରଥମେ ପରିବେଷଣ କରାଯାଇଛି ଏବଂ ଶ୍ରୁତି ମାଧ୍ୟମରେ ଅନ୍ୟତ୍ର ହସ୍ତାନ୍ତର କରାଯାଇଛି । ଏହାପରେ ଜନ୍ମ ନିଏ ଲିପି । ଲିପି ମାଧ୍ୟମରେ ଶିଳାଲିପି ଆକାରରେ ଅନୁଶାସନ ଭାବେ ସର୍ବସାଧାରଣ ସ୍ଥାନରେ ଲିପିବଦ୍ଧ ହୁଏ । ଏହାର ଦୃଷ୍ଟାନ୍ତ ହେଲେ ହାମୁରାବିଙ୍କ ଅନୁଶାସନର ଦଲିଲ, ଶିଳାଲିପି, ଖାରବେଳ ଓ ଅଶୋକଙ୍କ ସମୟରେ ଶିଳାଲିପି ଇତ୍ୟାଦି । ଶିଳାଲିପିରୁ ତାମ୍ରଲିପି, ଭୂର୍ଜଲିପି ଇତ୍ୟାଦି କ୍ରମଶଃ ଗଡ଼ିଚାଲେ କାଗଜର ଉଦ୍‌ଭାବନ ଯାଏଁ ।

ଏବେ ଆମେ ଯନ୍ତ୍ରଯୁଗରେ ପହଞ୍ଚିଛୁ । ଏଣୁ ମାଧ୍ୟମରେ ପରିବର୍ତ୍ତନ ଘଟିଲାଣି । ସଂପ୍ରତି ଯେଉଁ ମାଧ୍ୟମଗୁଡ଼ିକ ଏଥିପାଇଁ ସହାୟକ ହୁଅନ୍ତି, ସେଗୁଡ଼ିକ ହେଲା ସମ୍ବାଦପତ୍ର, ପତ୍ରପତ୍ରିକା, ଆକାଶବାଣୀ, ଦୂରଦର୍ଶନ, ୱେବ୍‌ସାଇଟ, ଇଣ୍ଟରନେଟ୍ ଏବଂ ଅନ୍ୟାନ୍ୟ ବୈଦ୍ୟୁତିକ ମାଧ୍ୟମ ଓ ଉପଗ୍ରହ ସେବା ଇତ୍ୟାଦି ।

'ଆକାଶବାଣୀ' ମାଧ୍ୟମରେ ସମ୍ବାଦ ପରିବେଷଣ କଥା ବା 'ଶୂନ୍ୟବାଣୀ' କଥା ବହୁ ପୁରାତନ ଯୁଗରୁ ଶୁଣି ଆସୁଛେ । ଏମିତିରେ କୃଷ୍ଣଜନ୍ମ କି କଂସବଧ କଥା । ଏଗୁଡ଼ିକୁ ଦୈବୀବାଣୀ ବି କୁହାଯାଏ । ସେମିତିରେ ମହାଭାରତରେ 'ଦୂରଦର୍ଶନ'ରୁ ସମ୍ବାଦ ସଂଗ୍ରହ ଓ ପରିବେଷଣ କଥା ବର୍ଣ୍ଣିତ ହୋଇଛି । ଜଣେ ସାମ୍ବାଦିକ ଏଠାରେ ଏକ ସମୟରେ ଦୁଇଟି କଥା କରେ, ସମ୍ବାଦ ସଂଗ୍ରହ ଓ ପରିବେଷଣ । ଦୂରଦର୍ଶନକୁ ଦିବ୍ୟ ଦର୍ଶନ ମଧ୍ୟ କୁହାଯାଇପାରେ । ମହାଭାରତର ସଂଜୟ ତାଙ୍କ ଦିବ୍ୟ ଦର୍ଶନ ମାଧ୍ୟମରେ କୁରୁକ୍ଷେତ୍ର ଯୁଦ୍ଧ ସ୍ୱଚକ୍ଷୁରେ ଦେଖି ତାହାକୁ ଧୃତରାଷ୍ଟ୍ରଙ୍କୁ ଶୁଣାଉଥିଲେ । ଏହା ନିଶ୍ଚିତ ଆଶର୍ଯ୍ୟ କଥା ଯେ ଜଣେ ନିର୍ଦ୍ଦିଷ୍ଟ ସ୍ଥାନରେ ନ ରହି ଏତେ ସଠିକ୍ ଭାବରେ କହି ପାରୁଛି କିପରି ? ତେବେ ଏହି ଦିବ୍ୟ ଦର୍ଶନରୁ ଆମେ ଆଜି ଦୂରଦର୍ଶନରେ ପହଞ୍ଚିଛୁ ।

ଗଣମାଧ୍ୟମରେ ପ୍ରଥମ ଦେବତା ବା ପ୍ରବକ୍ତା ହେଉଛନ୍ତି ନାରଦ । ସେ କୁଆଡ଼େ ସବୁ ବିଦ୍ୟାରେ ପାରଙ୍ଗମ ଓ ମହାଜ୍ଞାନୀ

ଥିଲେ । ସେ ନିଜଗୋଡ଼ରେ କଠଉ ପିନ୍ଧି ତିନିପୁର, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଖେଦି ଯାଉଥିଲେ । ଏଠାକଥା ନେଇ ସେଠି, ସେଠାକଥା ଆଣି ଏଠି ଅର୍ଥାତ୍ ଦେବତାକଥା ଦାନବମାନବ ପାଖରେ, ମାନବ କଥା ଦେବତା ବା ଦାନବମାନଙ୍କ ପାଖରେ ଏବଂ ଦାନବ କଥା ମାନବ ଓ ଦେବତାମାନଙ୍କ ପାଖରେ ପହଞ୍ଚାଇ ପାରୁଥିଲେ । ଖାଲି ସେତିକି ନୁହେଁ ଯେ କୌଣସି ବାର୍ତ୍ତା ବା ସମ୍ବାଦଟି ଗୋଟିଏ ମୁହୂର୍ତ୍ତରେ ସଂଗୃହୀତ ପରେ ସେହି କ୍ଷଣି ଅନ୍ୟପୁରରେ ପହଞ୍ଚି ଯାଇ ପାରୁଥିଲା ଠିକ୍ ଆଜିକାଲିର ଆକାଶବାଣୀ ବା ଦୂରଦର୍ଶନ ପରି ।

ନାରଦଙ୍କ ଏ ଚମତ୍କାରିତାରେ ଆମେ ନିଶ୍ଚୟ ଆଶ୍ଚର୍ଯ୍ୟ ହେବୁ । ତେବେ କଥାଟି ଏହି ଯେ ଆମେ ଏ ଯାବତ୍ କେବଳ ଏହି ମର୍ତ୍ତ୍ୟପୁରୀରେ ସୀମାବଦ୍ଧ ଥାଏ । ଆଉ ଯେ ଦୁଇପୁର ସ୍ୱର୍ଗ ବା ପାତାଳ ଅଛି କି ନା, ଏ ସତ୍ୟ ଏ ଜୀଅନ୍ତା ମଣିଷ ପାଖରେ ନାହିଁ କିମ୍ବା ଏଠୁ ଯାଇ ସେ ଦୁଇପୁରରୁ ଫେରିଲା ଲୋକ ଆମ ପାଖରେ କେହି ନାହିଁ । ଏହା ହିଁ ବିଚାରିବା କଥା । ଛାଡ଼ନ୍ତୁ । ଧରିନିଅନ୍ତୁ ନାରଦ ଥିଲେ । ମହାଭାରତର ସଂଜୟ ବି ଥିଲେ । ଏହା ଯଦି ସତ୍ୟ, ସଂଜୟଙ୍କ କଥା ଶତ ଶତକଡ଼ା ଠିକ୍ । ଏହା ମର୍ତ୍ତ୍ୟକଥା ।

ନାରଦ ସତ୍ୟ କହି ହିଁ ଅପ୍ରିୟ । ସେ ମଧ୍ୟ ଶତ ଶତାଂଶ ଠିକ୍, ତେବେ ବର୍ତ୍ତମାନର ବିଭିନ୍ନ ଗଣମାଧ୍ୟମ ପରି ଏମାନଙ୍କର ପରିବେଷଣ ଢାଞ୍ଚା ଭିନ୍ନ । ସତ୍ୟ ଭିନ୍ନ ଆଉ କିଛି ନାହିଁ । କେବଳ ସତ୍ୟ ପ୍ରକାଶର ଶୈଳୀ ଓ ଭାଷାରେ ଯାହା ପାର୍ଥକ୍ୟ । ଏହା ହିଁ ନାରଦ ଓ ସଂଜୟଙ୍କ ମଧ୍ୟରେ ବ୍ୟତିକ୍ରମ ।

ନାରଦ ତ୍ରିପୁରଗାମୀ ଏବଂ ନିର୍ଭୀକ ଓ ନିରପେକ୍ଷ ସଂବାଦଦାତା ବା ସାମ୍ବାଦିକ । ଅପ୍ରିୟ ସତ୍ୟ କହନ୍ତି ବୋଲି, ବେଳେବେଳେ କାହାରି ଚକ୍ଷୁଶୂଳ ହୁଅନ୍ତି ଅଥଚ କଥାଟି ଯେତେବେଳେ ସତ୍ୟ ବୋଲି ପ୍ରମାଣିତ ହୁଏ, ସେତେବେଳେ ଆଉ ଭୁଲବୁଝାମଣା ନ ଥାଏ । ସଂଜୟ ଥିଲେ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି କୈନ୍ଦ୍ରିକ କେବଳ ସମ୍ବାଦ ବା ତଥ୍ୟ ଯୋଗାଇବାରେ । ସେ କେବଳ ଦ୍ରଷ୍ଟା ରୂପେ ସତ୍ୟ ପରିବେଷଣ କରନ୍ତି ଅଥଚ ନାରଦ ଦ୍ରଷ୍ଟା, ଶ୍ରୋତା, କର୍ଣ୍ଣଗତା ଇତ୍ୟାଦିରେ ସ୍ୱୟଂ ସଂପୂର୍ଣ୍ଣର ବ୍ୟକ୍ତିତ୍ୱ ।

ସାମ୍ବାଦିକମାନେ ସମ୍ବାଦ ସଂଗ୍ରହ ଏବଂ ଚିତ୍ରୋତ୍ତଳନ କରି ପଠାନ୍ତି ଗଣମାଧ୍ୟମ ସଂସ୍ଥାକୁ । ସମ୍ବାଦର ବିଶ୍ୱସନୀୟତା ଉପରେ ସମ୍ବାଦଟିର ସୁନାମ, ବଦ୍‌ନାମ, ସତ୍ୟତା ବା ମିଥ୍ୟାର ପ୍ରଶ୍ନ ଉଠେ । ସମ୍ବାଦଟି ଯଦି ନିର୍ଭୀକ ଓ ନିରପେକ୍ଷଭାବେ ସଂଗୃହୀତ ହୋଇଥାଏ, ଏହା ଯଦି ପ୍ରକୃତ ସତ୍ୟ ଉପରେ ଆଧାରିତ ଥାଏ, ଏଠି କାହାର କିଛି କହିବାର ନ ଥାଏ । ତେବେ ଅପ୍ରିୟ ସତ୍ୟତାର ଶିକାର ହେବାକୁ ହୁଏ । ଅନ୍ୟ ପକ୍ଷରେ ଏହାଦ୍ୱାରା ସାମ୍ବାଦିକ, ସମ୍ବାଦ ପରିବେଷଣକାରୀ ଗଣମାଧ୍ୟମ ସଂସ୍ଥା ଏବଂ ଗଣମାନେ ଉପକୃତ ହୋଇ ଥାଆନ୍ତି ।

ଗଣମାଧ୍ୟମରେ ସାମ୍ବାଦିକତା ଏକ ବିପଦଶଙ୍କୁଳ ଏବଂ ନିଷ୍ଠସାଧକାର୍ଯ୍ୟ । ଏଥିପାଇଁ ନାରଦଙ୍କ ପରି ଜଣେ ସାମ୍ବାଦିକକୁ ଅଭେଦ୍ୟ, ଦୁର୍ଭେଦ୍ୟ ଏବଂ ଅଗମ୍ୟସ୍ଥାନକୁ ଜୀବନକୁ ବିପନ୍ନକରି ପହଞ୍ଚିବାକୁ ହୁଏ । ସତ୍ୟର ଆବିଷ୍କାର ଏତେ ସହଜ, ସରଳ ଓ ସୁଗମ ନୁହେଁ । ଏମିତି ସେମିତି ଲୋକ ବି ସାମ୍ବାଦିକ ପଦବାଚ୍ୟ ନୁହନ୍ତି । ସେ ଯଥାର୍ଥରେ ନାରଦଙ୍କ ପରି ଜଣେ ସର୍ବଜ୍ଞାନ ଜ୍ଞାତା ଥିବା ଦରକାର । ନିର୍ଭୀକ ଓ ସାହସୀ ଥିବା ଉଚିତ । ସଚ୍ଚୋଟ ଓ ସାଧୁତା ପଣ ଥିବା ଦରକାର ଏବଂ ସର୍ବୋପରି କର୍ତ୍ତବ୍ୟ ପ୍ରତି ନିଷ୍ଠାପରତା ଥିବା ଦରକାର ।

ସାମ୍ବାଦିକକୁ ବାଦ ଦେଲେ ସେ କାର୍ଯ୍ୟ କରୁଥିବା ଗଣମାଧ୍ୟମ ସଂସ୍ଥା ନିର୍ବିକାର, ନିର୍ଲିପ୍ତ, ନିରପେକ୍ଷ, ନିର୍ଭୀକ ଓ ସର୍ବୋପରି ନିର୍ଲୋଭୀ ସଂସ୍ଥାଥିବା ଉଚିତ । ଲୋଭ ପକ୍ଷପାତିତାର ଗୋଡ଼, ଅସାଧୁତାର ମାର୍ଗଦର୍ଶକ ।

ଗଣମାଧ୍ୟମର ନିରପେକ୍ଷତା ନ ରହିଲେ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ସାମ୍ବାଦିକମାନେ ପ୍ରଭାବିତ ହୁଅନ୍ତି । ଏକଥା ମନେ ରଖିବା ଉଚିତ ଯେ ସତ୍ୟର ଅପଳାପ ହେଲେ ଏହାର ପରିଣାମ ଅତ୍ୟନ୍ତ ଭୟଙ୍କର ହୁଏ । ଆହୁରି ଅଧିକ ସତ୍ୟ ଯେ ସତ୍ୟଟି ଯେତେବେଳେ ଦିନେ ନା ଦିନେ ଆବିଷ୍କାର ହେବ, ସେତେବେଳେ ଗୁଡ଼ାଏ ବିଭ୍ରାଟ ଓ କୁଫଳାଫଳ ଘଟି ଯାଇଥିବ । ଏହାକୁ ନେଇ ଯାବତୀୟ ହିଂସା, ଦ୍ୱେଷ, କଳହ, ଯୁଦ୍ଧ ଏବଂ ଜୀବନ ବିପନ୍ନ ତଥା ଆର୍ଥିକ ଦୁର୍ଗତି ଓ ମାନସିକ ଅସ୍ଥିରତା ଓ କ୍ଷତି କାହାରି ନା କାହାରି ଘଟିଯାଇଥିବ ।

ଉଭୟ ଗଣମାଧ୍ୟମ ଏବଂ ସାମ୍ବାଦିକ ଏବେ ଦୁର୍ନୀତିମୁକ୍ତ ନୁହନ୍ତି । ନିଜସ୍ୱ ପେଟ ପାଟଣାର ସ୍ୱାର୍ଥକୁ ଅନେକେ ଏହାକୁ ପୋଷଣର ମାଧ୍ୟମ କଲେଣି, ଅର୍ଥାଗମର ଏହାକୁ ଭିନ୍ନ ପନ୍ଥାବୋଲି ଧରିଲେଣି । 'ସମ୍ବାଦ ଓ ସାମ୍ବାଦିକତା' ନାଁରେ ଅନ୍ୟକୁ ଭୟଭୀତ କରାଗଲାଣି । ଏଣୁ ଗଣମାଧ୍ୟମକୁ ଅନେକ ଭୟ କଲେଣି ।

ବିପରୀତକ୍ରମେ ଅନେକ ଗୋଷ୍ଠୀ ଅଥବା ସମାଜର ବଡ଼ପଣ୍ଡାମାନେ କିଛି ନା କିଛି ଗଣମାଧ୍ୟମରେ ନିୟନ୍ତ୍ରକ ।

ସେମାନେ କେବଳ ନିଜର ସ୍ୱାର୍ଥକୁ ଆଖିଆଗରେ ରଖି ତାଙ୍କ ଗଣମାଧ୍ୟମକୁ ନିୟନ୍ତ୍ରଣ କରିଥାନ୍ତି । ସେପରି ସ୍ଥଳେ ସେଠି ନିରପେକ୍ଷତା ଆଶା କରାଯିବ କିପରି ?

ଆହୁରି ଏକ ଦୁଃଖଦ କଥା ଯେ ଏ ଭ୍ରଷ୍ଟାଚାରୀ ଯୁଗରେ ସତ୍ୟ ଘଟଣାଟି ପ୍ରକାଶ କରିବା ନିମନ୍ତେ ସାମ୍ବାଦିକମାନେ ବା ଗଣମାଧ୍ୟମ ଭୟ କଲେଣି । ସେମାନଙ୍କୁ ଅସଲ ଘଟଣାଟି ପ୍ରୟାସ ନ କରିବାକୁ ଚାପ ପକାଯାଉଛି ଅଥବା ଭୟଭୀତ କରାଯାଉଛି ଏବଂ କେତେକ ସ୍ଥଳରେ ସାମ୍ବାଦିକମାନଙ୍କୁ ହତ୍ୟା କରାଯାଉଛି ।

ଏବେ ୟୁନେସ୍କୋ ସହଯୋଗରେ ପ୍ରତ୍ୟେକ ବର୍ଷ ମେ ୩ ତାରିଖରେ ଦୁଃସାହସିକ, ନିରପେକ୍ଷ, ନିର୍ଭୀକ ଗଣମାଧ୍ୟମ ସେବାରେ ନିଜକୁ ନିୟୋଜିତ କରିଥିବା ଏବଂ ସେଥିପାଇଁ ନିର୍ଯାତିତ ବା ଅତ୍ୟାଚାରିତ ହୋଇଥିବା ଜଣେ ଲେଖାଏଁ ସ୍ୱାଧୀନ ଚେତା ସାମ୍ବାଦିକଙ୍କୁ ପୁରସ୍କୃତ କରାଯାଉଛି । ପ୍ରତିବର୍ଷ ମେ ୩ ତାରିଖଟି ସେମାନଙ୍କ ସ୍ମୃତିରେ ବିଶ୍ୱ ଗଣମାଧ୍ୟମ ସ୍ୱାଧୀନତା ଦିବସ ରୂପେ ପାଳିତ ହେଉଛି ।

ରାଜ-ରାଜୁଡ଼ା, ସାମରିକ ଓ ଏକଛତ୍ରବାଦୀ ଶାସନରେ ଗଣମାଧ୍ୟମର ସ୍ୱାଧୀନତାକୁ ହତ୍ୟା କରାଯାଇଥାଏ । ଏପରିକି ଏକଛତ୍ରଧର୍ମୀ ଶାସନ ଏବଂ ନାମକୁ ମାତ୍ର ଗଣତନ୍ତ୍ର ପଥାବଲମ୍ବୀ ଶାସନରେ ଗଣମାଧ୍ୟମର ଭୂମିକା ଅବାଧ ଓ ସ୍ୱଚ୍ଛନ୍ଦ ହୋଇ ନଥାଏ । କେବଳ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ଗଣମାଧ୍ୟମମାନେ ଆଶାନୁରୂପେ କାର୍ଯ୍ୟ କରିଥାନ୍ତି । ତଥାପି ବର୍ତ୍ତମାନ ଯଥାର୍ଥ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଗ୍ରହଣ କରିଥିବା ଅନେକ ରାଷ୍ଟ୍ରରେ ଗଣମାଧ୍ୟମର ସ୍ୱାଧୀନତାକୁ କ୍ଷୁଣ୍ଣ କରିବାକୁ ଚେଷ୍ଟା ଚାଲିଛି ।

ଗଣତାନ୍ତ୍ରିକ ଶାସନ ପ୍ରକ୍ରିୟାରେ ତିନୋଟି ବିଭାଗ ଅଛି : ବ୍ୟବସ୍ଥାପିକା, କାର୍ଯ୍ୟପାଳିକା ଏବଂ ନ୍ୟାୟପାଳିକା । ଏହାକୁ ସମ୍ବିଧାନର ତିନିସ୍ତମ୍ଭ କୁହାଯାଏ । ପ୍ରଥମ ଦୁଇଟି ପରସ୍ପର ନିର୍ଭରଶୀଳ ଏବଂ ତୃତୀୟଟି ସ୍ୱାଧୀନ ଏବଂ ନିରପେକ୍ଷ । ତଥାପି ଏମାନେ କେହି ସ୍ୱାର୍ଥରହିତ ଏବଂ ଦୁର୍ନୀତିମୁକ୍ତ ନୁହଁନ୍ତି । ଏମାନଙ୍କୁ ସୁନିୟନ୍ତ୍ରିତ କରିବା ପାଇଁ ଗଣମାଧ୍ୟମ ଚତୁର୍ଥ ସ୍ତମ୍ଭ ଭାବେ କାର୍ଯ୍ୟ କରେ । ଗଣମାଧ୍ୟମ ଦ୍ୱାରା ପ୍ରକାଶିତ ଓ ପ୍ରସାରିତ ସମ୍ବାଦ ଶାସନ କଳର ନୀତି, କାର୍ଯ୍ୟଶୈଳୀ, ପରିକଳ୍ପନା ଓ ସ୍ଥିତି ସମ୍ପର୍କରେ ଏବଂ ସାମାଜିକ ବ୍ୟବସ୍ଥା ଓ ଚରିତ୍ର ବିଷୟରେ ଯେଉଁ ଭଳି ଜନଗଣଙ୍କୁ ଅବଗତ କରାଇଥାଏ, ସେହିପରି ସେମାନଙ୍କର ଆଶା-ଆକାଂକ୍ଷା, ଦାବୀ, ମତାମତକୁ ଶାସକଙ୍କ ନିକଟରେ ପହଞ୍ଚାଇଥାଏ । ସେହି ଅନୁସାରେ ସରକାର ଯଥାବିଧି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାନ୍ତି । ଅନ୍ୟ ପକ୍ଷେ ଶାସନ କଳର ଭୁଲ ନୀତି, ଦୋଷ-ତ୍ରୁଟି ଓ ପରିକଳ୍ପନା ସମ୍ପର୍କରେ ଯେପରି ପଦାରେ ପକାଏ, ତାହା ତାଙ୍କର ଅପରାଧୀମୂଳକ କାର୍ଯ୍ୟକଳାପ ବିରୁଦ୍ଧରେ ସଚେତନତା ସୃଷ୍ଟି କରିଥାଏ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ, ବ୍ୟକ୍ତି, ସମାଜ ଓ ରାଷ୍ଟ୍ରର ଚରିତ୍ର ଗଠନ ଏବଂ ସଂଶୋଧନ ନିମନ୍ତେ ଗଣମାଧ୍ୟମର ଭୂମିକା ଅନସ୍ୱୀକାର୍ଯ୍ୟ ଏବଂ ଗୁରୁତ୍ୱପୂର୍ଣ୍ଣ ।

କୁହାଯାଇଛି, ସାମ୍ବାଦିକତା ଏକ କଳା । ଏହା ପୂର୍ଣ୍ଣ ପ୍ରାଣର ଏକ ବୃତ୍ତି । ଏ ବୃତ୍ତି ନିର୍ଭୀକ ନିରପେକ୍ଷ ଓ ଦୁଃସାହସିକତାର ଅଟେ । ଏଥିରେ ଅପ୍ରିୟ ସତ୍ୟ କହି ବରଂ ନାରଦଙ୍କ ପରି କଳିଆ ହୁଅ, ପକ୍ଷଭୁକ୍ତ ହୋଇ ବଦନାମି ନ ହୁଅ । ଏଥିପାଇଁ ଜଣକୁ ନିଃସ୍ୱାର୍ଥପର ଏବଂ ନିର୍ବିକାର ହେବାକୁ ହେବ । ନାରଦଙ୍କ ଭାଷାରେ : ମୋର ଏଠି ସ୍ୱାର୍ଥ ନାହିଁ ପ୍ରଭୁ, ଯାହା ସତ୍ୟ, ଯାହା ଚକ୍ଷୁସିଦ୍ଧ, ଯାହା କର୍ଣ୍ଣଗତ, ତାହା ହିଁ ବଖାଣୁଛି । ଏଥିକୁ ମେତେ କିଏ କଣ କହିଲେ ବା ଭାବିଲେ ମୋର ଯାଏ ଆସେ ନାହିଁ । ମୁଁ ନିରପେକ୍ଷ, ନିର୍ଲିପ୍ତ ଓ ନିର୍ବିକାର ।

ଉପରୋକ୍ତ ଆଲୋଚନାକୁ ନେଇ ଗଣମାଧ୍ୟମ ପାଇଁ ଏଥିକି କୁହାଯାଇପାରେ ଯେ, ସତ୍ୟ ଶରଣଂ ଗଚ୍ଛାମି ।

ଅଧ୍ୟକ୍ଷ
ଓଡ଼ିଶା ଭାଷା ସଂରକ୍ଷଣ ଏବଂ ଗବେଷଣା ପ୍ରତିଷ୍ଠାନ
ବିକାଶ ନଗର, ଜଟଣୀ



# ବାକ୍ ସ୍ୱାଧୀନତା : ଏକ ଦୃଷ୍ଟିପାତ

ଡାକ୍ତର ରବିରଞ୍ଜନ ସାହୁ

ବିବର୍ତ୍ତନ ପ୍ରକ୍ରିୟାରେ ମଣିଷ କଥା କହି ଶିଖିବା ପରଠାରୁ ସେଇ ମାଧ୍ୟମରେ ହିଁ ନିଜର ଚିନ୍ତା, ଭାବନା, ଆବଶ୍ୟକତା ବ୍ୟକ୍ତ କରିଆସୁଛି । ଅବଶ୍ୟ ଅଭିବ୍ୟକ୍ତି ଲାଗି ସେ ଲେଖା, ଚିତ୍ର, ଠାର ଭଳି ଅନ୍ୟାନ୍ୟ ମାଧ୍ୟମର ସାହାଯ୍ୟ ନେଇଛି । ମାତ୍ର କେବଳ ଶୋଇବା ସମୟ ଛଡ଼ା ପ୍ରାୟ ଅନ୍ୟସବୁ ସମୟରେ ତାକୁ ନିର୍ଭର କରିବାକୁ ପଡୁଛି କଥନ ବା ବାକ୍ ଅଭିବ୍ୟକ୍ତି ଓ ଅଭିବ୍ୟକ୍ତି କଥନ ଓ ସମର୍ଥକ, ଯଦିଓ କଥନ ଅଭିବ୍ୟକ୍ତି ଲାଗି ଅନ୍ୟତମ ଅନନ୍ୟ ମାଧ୍ୟମ । ନିତ୍ୟ ନୈମିତ୍ତିକ ଜୀବନଧାରଣ ଶୈଳୀରେ କଥନ ବା ବାକ୍-ଅଭିବ୍ୟକ୍ତିକୁ ବହୁଧା ଉପଯୋଗ କରାଯାଉଥିବାରୁ ସୁସଂପର୍କ ରକ୍ଷା, ସ୍ନେହ, ଶ୍ରଦ୍ଧା ଓ ସହାୟତା ପ୍ରାପ୍ତି ତଥା ନିଜର ଓ ସମାଜର ସମୃଦ୍ଧି ଲାଗି ଭାରତୀୟ ପରମ୍ପରାରେ କେଉଁ ଆଦିମ କାଳରୁ ବାକ୍ ସଂଯମ ନୀତି ଉପରେ ଗୁରୁତ୍ୱ ଦିଆହୋଇ ଆସୁଛି । ସ୍ୱେଚ୍ଛାକୃତଭାବେ ଏଭଳି ସଂଯମ ରକ୍ଷାଲାଗି କୁହାଯାଉଛି । ଅନ୍ୟଥା ସଂଯମକୁ ଲଦି ଦିଆଗଲେ, ତାହା ନିୟନ୍ତ୍ରଣ ବା କଟକଣା ପଦବାଚ୍ୟ ହେବ । ସେଭଳି ଅବସ୍ଥାରେ ବାକ୍ ସ୍ୱାଧୀନତା କ୍ଷୁଣ୍ଣ ହେଲା ବୋଲି ମନେ କରାଯିବ । ସାମାଜିକ କ୍ଷେତ୍ରରେ ବାକ୍ ସ୍ୱାଧୀନତାକୁ ସଂଯମର ଘେର ମଧ୍ୟରେ ରଖା ଯାଇଥିବାବେଳେ ରାଜନୈତିକ ସ୍ତରରେ ଯେକୌଣସି ବ୍ୟକ୍ତିର ମତାମତ ଓ ଚିନ୍ତାଧାରା ବ୍ୟକ୍ତ ଏକ ଅଧିକାର (ରାଜନୈତିକ ଅଧିକାର) ଭାବରେ ଗଣ୍ୟ ହେଉଥିଲା । ଭାରତୀୟ ସମ୍ବିଧାନରେ ଅଭିବ୍ୟକ୍ତିକୁ ମୌଳିକ ଅଧିକାର ପର୍ଯ୍ୟାୟଭୁକ୍ତ କରାଯାଇଥିବାରୁ ଅଭିବ୍ୟକ୍ତିର ପ୍ରମୁଖ ମାଧ୍ୟମ ବାକ୍-ଅଭିବ୍ୟକ୍ତି ବା କଥନ ସେଭଳି ଅଧିକାର ମାନ୍ୟତା ଲାଭ କରିଛି । ମାତ୍ର କାର୍ଯ୍ୟତଃ ବାକ୍ ସ୍ୱାଧୀନତା କୌଣସି ଦେଶ ଅବାଧ ଓ ଅପ୍ରତିହତ ନୁହେଁ । ଅନେକ ଲକ୍ଷ୍ମଣରେଖା ମଧ୍ୟରେ ତାହା ସୀମାବଦ୍ଧ । ସେଥିଯୋଗୁଁ ଅନ୍ୟର ମାନହାନୀ କଲାଭଳି ମିଥ୍ୟା ଦୋଷାରୋପ ଓ କୁତ୍ସାରଟନା କରିବାକୁ ବିଦ୍ରୋହ ବା ଶୃଙ୍ଖଳାଭଙ୍ଗ ଲାଗି ପ୍ରୋତ୍ସାହନ ସୃଷ୍ଟି କରୁଥିବା କଥା କହିବାକୁ । ଉଦାହରଣ ସ୍ୱରୂପ, ସଂପ୍ରଦାୟ ମଧ୍ୟରେ ଘୃଣାଭାବ ସୃଷ୍ଟି କରିବା କପିରାଇଟ ଉଲଙ୍ଘନ କରିବା ଏବଂ ସରକାରୀ ଭାବେ ଗୋପନୀୟ ବା ସେଇଭଳି ତଥ୍ୟ ପ୍ରକଟ କରିବାକୁ କେହି ବାକ୍ ସ୍ୱାଧୀନତା ଉପଲକ୍ଷ କରିପାରିବ ନାହିଁ ।

ବୈଧାନିକ ପଦ୍ଧତିରେ ବାକ୍ ସ୍ୱାଧୀନତାର ଚିନ୍ତାଧାରା ପ୍ରାଥମିକ ମାନବିକ ଅଧିକାର ଦଲିଲଗୁଡ଼ିକରେ ସ୍ଥାନ ପାଇଥିଲା । ୧୬୮୯ରେ ବ୍ରିଟେନର ଅଧିକାର ବିଲ୍‌ରେ ପାର୍ଲାମେଣ୍ଟରେ ସଭ୍ୟମାନଙ୍କ ବକ୍ତବ୍ୟ ସ୍ୱାଧୀନତା ପ୍ରାପ୍ତ ହୋଇଥିଲା । ତା'ପରେ ୧୭୮୯ରେ ଫରାସୀ ବିପ୍ଳବ ବେଳେ ମାନବ ଓ ନାଗରିକଙ୍କ ଅଧିକାର ସମ୍ପର୍କିତ ଘୋଷଣା ବାକ୍ ସ୍ୱାଧୀନତା ଏକ ଅବିଚ୍ଛେଦ୍ୟ ଅଧିକାର ବୋଲି ସ୍ୱୀକାର କରାଯାଇଥିଲା । ଘୋଷଣାର ୧୧ ଧାରାରେ ଉଲ୍ଲେଖ କରାଯାଇଥିଲା ଯେ ମତାମତ ଓ ଚିନ୍ତନର ଅବାଧ ଅଭିବ୍ୟକ୍ତି ହେଉଛି ମଣିଷର ଏକ ମହାର୍ଘ ଅଧିକାର । ତଦନୁଯାୟୀ ଯେ କେହି ନାଗରିକ ଅବାଧରେ କହି, ଲେଖି ଓ ଛାପି ପାରିବେ, ମାତ୍ର ତା ଆଇନ ଅନୁଯାୟୀ ପରିଭାଷିତ ସେ ସ୍ୱାଧୀନତାର ଅସଦୁପଯୋଗ ହେଲେ ସେଥିପାଇଁ ସେ ଦାୟୀ ରହିବେ । ମାନବିକ ଅଧିକାର ସଂପର୍କିତ ସାର୍ବଜନୀନ ଘୋଷଣାର ୧୯ ଧାରା ଅଭିବ୍ୟକ୍ତିର ସ୍ୱାଧୀନତାକୁ ଏକ ମାନବିକ ଅଧିକାର ଏବଂ ଆନ୍ତର୍ଜାତିକ ସିଭିଲ ଓ ରାଜନୈତିକ ଅଧିକାର ସଂପର୍କିତ ଚୁକ୍ତିପତ୍ରରେ ଆନ୍ତର୍ଜାତିକ ମାନବିକ ଅଧିକାର ଭାବରେ ସ୍ୱୀକାର କରାଯାଇଥିଲା । ଧାରା ୧୯ ଅନୁଯାୟୀ ପ୍ରତ୍ୟେକ ଅବାଧରେ ମତପୋଷଣ କରିପାରିବେ, ପ୍ରତ୍ୟେକଙ୍କର ମୁକ୍ତ ଅଭିବ୍ୟକ୍ତି ଲାଗି ଅଧିକାର ରହିବ । ଏ ଅଧିକାର ମଧ୍ୟରେ ସବୁଆଡୁ ମୌଖିକ, ଲିଖିତ ବା ମୁଦ୍ରିତ ବା କଳାକୃତି ବା ନିଜ ପସନ୍ଦ ଅନୁଯାୟୀ ଅନ୍ୟ ମାଧ୍ୟମରେ ସବୁ ପ୍ରକାର ତଥ୍ୟ ଓ ଚିନ୍ତାଧାରା ଖୋଜିବା, ପାଇବା

ଓ ପ୍ରଦାନ କରିବାର ସ୍ୱାଧୀନତା ଅନ୍ତର୍ଭୁକ୍ତ । ସେଇ ୧୯ ଧାରାରେ ପୁଣି କୁହାଯାଇଛି ଯେ ଏଭଳି ଅଧିକାରକୁ ସାବ୍ୟସ୍ତ କରିବା ସହିତ ସ୍ୱତନ୍ତ୍ର କର୍ତ୍ତବ୍ୟ ଓ ଦାୟିତ୍ୱ ମଧ୍ୟ ସଂଶ୍ଳିଷ୍ଟ : ତେଣୁ ଆବଶ୍ୟକ ସ୍ଥଳେ ଯଥା– ଅନ୍ୟର ଅଧିକାର ଓ ଖ୍ୟାତିକୁ ସମ୍ମାନ ଦେବା ଜାତୀୟ ନିରାପତ୍ତା ବା ସାଧାରଣ ଶୃଙ୍ଖଳା ରକ୍ଷା ବା ସାଧାରଣ ସ୍ୱାସ୍ଥ୍ୟ ବା ନୈତିକତା ଦୃଷ୍ଟିରୁ କେତେକ ଧରଣର କଟକଣା ପ୍ରତ୍ୟାଶିତ ।

ବର୍ତ୍ତମାନ ବାକ୍ ସ୍ୱାଧୀନତା ଓ ଅଭିବ୍ୟକ୍ତିର ସ୍ୱାଧୀନତା ଆନ୍ତର୍ଜାତିକ ଓ ଆଞ୍ଚଳିକ ମାନବିକ ଅଧିକାର ଭାବେ ସ୍ୱୀକୃତ ହୋଇଛି । ଆନ୍ତର୍ଜାତିକ ଆଞ୍ଚଳିକ ଓ ଜାତୀୟ ମାନରେ ବାକ୍ ସ୍ୱାଧୀନତାକୁ ଅଭିବ୍ୟକ୍ତିର ସ୍ୱାଧୀନତା ଭାବେ ସ୍ୱୀକାର କରାଯାଇଛି, ଯା' ମଧ୍ୟରେ କଥନ, ଲିଖନ, ମୁଦ୍ରଣ, ଇଣ୍ଟରନେଟ ବା କଳାକୃତି ଇତ୍ୟାଦି ମାଧ୍ୟମ ଅନ୍ତର୍ଭୁକ୍ତ । ତେଣୁ ବାକ୍ ସ୍ୱାଧୀନତା ସୁରକ୍ଷାର ଅର୍ଥ କେବଳ ଅଭିବ୍ୟକ୍ତିର ବିଷୟବସ୍ତୁ ନୁହେଁ, ମାଧ୍ୟମ ମଧ୍ୟ ।

ଅଭିବ୍ୟକ୍ତି ଓ ବାକ୍ ସ୍ୱାଧୀନତା ଇତିହାସ ସୁଦୀର୍ଘ । ଯାହା ଅନୁମାନ କରାଯାଉଛି ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଶେଷ ଓ ୫ମ ଶତାବ୍ଦୀର ଆରମ୍ଭ କାଳରେ ଏଥେନ୍ସରେ ବାକ୍ ସ୍ୱାଧୀନତାର ଗଣତାନ୍ତ୍ରିକ ଆଦର୍ଶ ଅଙ୍କୁରିତ ହୋଇଥିଲା । ରୋମୀୟ ରିପବ୍ଲିକ୍‌ର ଦୁଇଟି ସ୍ମରଣୀୟ ମୂଲ୍ୟବୋଧ ହେଉଛି– ଧର୍ମୀୟ ସ୍ୱାଧୀନତା ଓ ବାକ୍ ସ୍ୱାଧୀନତା ।

ଇତିହାସର ପୃଷ୍ଠାରେ ରାଜା-ରାଜୁତି ଔପନିବେଶିକ, ବ୍ୟକ୍ତିବିଶେଷ ବା ଦଳୀୟ ଏକଛତ୍ରବାଦୀ ଶାସନରେ ଶାସନତନ୍ତ୍ର ବିରୁଦ୍ଧରେ ବା ଶାସକଙ୍କୁ ଅସନ୍ତୁଷ୍ଟ କଲାଭଳି ବିରୋଧ ମତପୋଷଣ ଓ ପ୍ରକାଶ ପ୍ରତ୍ୟାଶିତ ଭାବେ ଅସମ୍ଭବ । ତେଣୁ ସେଭଳି ଶାସନ କାଳରେ ଅଭିବ୍ୟକ୍ତି ତଥା ବାକ୍ ସ୍ୱାଧୀନତା ବହୁ ଭାବରେ ସଙ୍କୁଚିତ ହୋଇଆସିଛି– ଏବେ ବି ହେଉଛି । ସେଥିଯୋଗୁଁ ରକ୍ତାକ୍ତ ବା ଶାନ୍ତିପୂର୍ଣ୍ଣ ବିପ୍ଳବ ହୋଇ ବହୁ ଦେଶରେ ଶାସନତନ୍ତ୍ର ପରିବର୍ତ୍ତିତ ହୋଇଛି । ଭାରତରେ ଗାନ୍ଧିଜୀଙ୍କ ଶାନ୍ତିପୂର୍ଣ୍ଣ ଅହିଂସା ଆନ୍ଦୋଳନ ଦ୍ୱାରା ସେଭଳି ପରିବର୍ତ୍ତନ ଆସିଥିଲା ଏବଂ ସ୍ୱାଧୀନ ଭାରତରେ ଗଣତାନ୍ତ୍ରିକ ଶାସନ ପ୍ରବର୍ତ୍ତିତ ହୋଇଛି ।

ବିଶ୍ୱରେ ଗଣତାନ୍ତ୍ରିକ ବ୍ୟବସ୍ଥାର ଅଭ୍ୟୁଦୟ ପରେ ଅଭିବ୍ୟକ୍ତି ସ୍ୱାଧୀନତାର ଚିନ୍ତାଧାରା ଗଣତନ୍ତ୍ର ସଂପର୍କିତ ଧାରଣା ଓ ରାଜନୈତିକ ବିତର୍କ ସହିତ ଘନିଷ୍ଠଭାବେ ସଂଶ୍ଳିଷ୍ଟ ହୋଇଗଲା । ଅଭିବ୍ୟକ୍ତି-ସ୍ୱାଧୀନତାର ସୀମିତ-କରଣ ନୀତିରେ ଦର୍ଶାଗଲା ଯେ ଜରୁରୀ ଅବସ୍ଥା କାଳରେ ବି ସାଧାରଣ ବିତର୍କକୁ ପୂରାପୂରି ଦମନ କରାଯାଇପାରିବ ନାହିଁ । ବାକ୍-ସ୍ୱାଧୀନତା ଓ ଗଣତନ୍ତ୍ରର ସଂଯୋଗର ଜଣେ ବିଶିଷ୍ଟ ପ୍ରସ୍ତାବକ ଥିଲେ ଆଲେକ୍‌ଜାଣ୍ଡାର ମେକଲେ ଜନ୍ । ତାଙ୍କର ଯୁକ୍ତି ଥିଲା ଯେ ଗଣତନ୍ତ୍ର ହେଉଛି ଲୋକଙ୍କର ଆତ୍ମଶାସନ, ସେଭଳି ଏକ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ଲାଗି ଭୋଟଦାତାଙ୍କୁ ସବୁକଥା ଜଣାଇବା ଦରକାର । ସେମାନଙ୍କ ମଧ୍ୟରେ ଯଥାଯଥ ସଚେତନତାର ବିକାଶ ଲାଗି ସୂଚନା ଓ ଚିନ୍ତନର ମୁକ୍ତ ପ୍ରବାହ ଅପ୍ରତିହତ ରହିବା ଦରକାର । ଶାସନରେ ଥିବା ଲୋକମାନେ ତଥ୍ୟ ନ ଜଣାଇ ଓ ସମାଲୋଚନାର କଣ୍ଠରୋଧ କରି ଭୋଟରଙ୍କୁ ହାତ କରିବାକୁ ଚାହିଁଲେ ଗଣତନ୍ତ୍ରରେ ଅତ୍ୟାବଶ୍ୟକ ଗଣତାନ୍ତ୍ରିକ ଆଦର୍ଶର ଯଥାର୍ଥ ପ୍ରତିଫଳନ ହୋଇପାରିବ ନାହିଁ । ସେ ସ୍ୱୀକାର କରିଥିଲେ ଯେ ହୁଏତ ସାମାଜିକ କଲ୍ୟାଣ ସାଧନ ଭଳି ଭାବନାରୁ ଲୋକଙ୍କୁ ହାତ କରିବାର ମନୋଭାବ ଉଦ୍ରେକ ହୋଇପାରିଥାଏ । ମାତ୍ର ତଦ୍ୱାରା ଗଣତାନ୍ତ୍ରିକ ଆଦର୍ଶ ଅନ୍ୟଥା ହୋଇଯିବ । ଗଣତାନ୍ତ୍ରିକ ଭିତ୍ତିରେ ବାକ୍ ସ୍ୱାଧୀନତା ସପକ୍ଷରେ ଆଲେକ୍‌ଜାଣ୍ଡାର ଓ ଯୁକ୍ତି ସବୁଠୁଁ ବଳି ଆକର୍ଷଣୀୟ ବୋଲି କହି ଏରିକ୍ ବାରେଣ୍ଡଟ୍ ଏହାକୁ ସ୍ୱାଗତ କରିଥିଲେ । ଥମାସ.ଆଇ.ଇ. ମରସନ୍ ଆଉ ପାଦେ ଆଗକୁ ଯାଇ କହିଥିଲେ ଯେ ବାକ୍-ସ୍ୱାଧୀନତା ଦ୍ୱାରା ସ୍ଥିରତା ଓ ପରିବର୍ତ୍ତନ ମଧ୍ୟରେ ଭାରସାମ୍ୟ ରକ୍ଷା କରାଯାଇପାରିବ । ବାକ୍-ସ୍ୱାଧୀନତା ଉତ୍ତାପ ନିସରଣ ଲାଗି ବ୍ୟବହୃତ ସେଫ୍‌ଟି ଭଲ୍‌ଭ ଭାବରେ କାର୍ଯ୍ୟ କରିଥାଏ, ତାହା ହୋଇ ନ ପାରିଲେ ଲୋକେ ବିପ୍ଳବାଭିମୁଖୀ ହେବେ । ଇମରସନ୍ ପୁଣି କହିଥିଲେ ଯେ ଅମଲାତାନ୍ତ୍ରିକ ମାନ ଅବକ୍ଷୟର କାରକ ପ୍ରକ୍ରିୟାର ଦୂରୀକରଣ ବା ଉନ୍ନତିସାଧନ ଲାଗି ବିରୋଧୀମାନେ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଦାୟିତ୍ୱ ତୁଲାଇଥାଆନ୍ତି ।

ବିଶ୍ୱବ୍ୟାଙ୍କ ଅଧୀନରେ ବିଶ୍ୱବ୍ୟାପୀ ଶାସନ ସୂଚକ ପ୍ରକଳ୍ପ ଦ୍ୱାରା ହୋଇଥିବା ଗବେଷଣାରେ ସୂଚିତ କରାଯାଇଛି ଯେ ବାକ୍ ସ୍ୱାଧୀନତା ଓ ତଦନୁସାରୀ ଉତ୍ତର-ଦାୟିତ୍ୱବୋଧତା । ପ୍ରକ୍ରିୟାରେ ଯେକୌଣସି ଦେଶର ଶାସନର ମାନ ଉପରେ ପ୍ରଭାବ ତାତ୍ପର୍ଯ୍ୟପୂର୍ଣ୍ଣ । ୨୦୦ଟି ଦେଶରେ ଏ ପ୍ରକଳ୍ପ ପକ୍ଷରୁ ଗବେଷଣା କରାଯାଇଥିଲା । ଏଥିରୁ ସ୍ପଷ୍ଟ ବୁଝିବାକୁ ପଡୁଛି ଯେ ଗଣତନ୍ତ୍ରର ସ୍ୱାର୍ଥ ଓ ସୁଶାସନ ଲାଗି ବାକ୍-ସ୍ୱାଧୀନତାର ବାଞ୍ଛନୀୟତା ପ୍ରଶ୍ନାତୀତ । ମାତ୍ର ମିଥ୍ୟା ଦୋଷାରୋପ, ଅଶ୍ଳୀଳତା, କୁତ୍ସାରଟନା ଏବଂ ଦେଶ, ଜାତି ଓ ସମାଜର ସ୍ୱାର୍ଥହାନି କଲା ଭଳି ଢଙ୍ଗରେ ସେ ସ୍ୱାଧୀନତାର ଦୁରୁପଯୋଗ କରାଗଲେ ତା' ବିପଜ୍ଜନକ ହେବ ।

ଉପ ସଭାପତି, କଟକ ଜିଲ୍ଲା ଉତ୍କଳ ସମ୍ମିଳନୀ
ଚାନ୍ଦିନୀଚୌକ, କଟକ-୨

# ଭାରତୀୟ ଗଣତନ୍ତ୍ରର ବିକାଶରେ ଗଣମାଧ୍ୟମର ଭୂମିକା

ଡକ୍ଟର ପୁରୁଷୋତ୍ତମ ବିଶ୍ୱାଳ

ସମଗ୍ର ବିଶ୍ୱରେ ସବୁଠାରୁ ବେଶୀ ଆଦୃତ ଶାସନ ବ୍ୟବସ୍ଥା ହେଉଛି ଗଣତନ୍ତ୍ର । ଗଣତନ୍ତ୍ରର ଅର୍ଥ ଜନସାଧାରଣଙ୍କୁ କ୍ଷମତା ବା ଶକ୍ତି ପ୍ରଦାନ । ବିଶ୍ୱର ପ୍ରାୟ ୧୨୦ ଗୋଟି ଦେଶରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତିଷ୍ଠିତ ହୋଇପାରିଛି । ଏହା ମଧ୍ୟରୁ ପ୍ରାୟ ୮୧ଟି ଦେଶ ବିଗତ ଦୁଇ ଦଶନ୍ଧି ମଧ୍ୟରେ ସାଧାରଣ ଜନତାଙ୍କ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସେମାନଙ୍କ ଶାସନ ବ୍ୟବସ୍ଥା ଗଣତନ୍ତ୍ରକୁ ରୂପାନ୍ତରିତ କରିଛନ୍ତି । ଆନନ୍ଦର କଥା, ପୃଥିବୀରେ ଉଚ୍ଚ ମାନବୀୟ ବିକାଶ ସୂଚୀ ପ୍ରଦର୍ଶନ କରୁଥିବା ୪୮ ଗୋଟି ଦେଶ ମଧ୍ୟରୁ ୪୨ଟି ଦେଶରେ ଗଣତନ୍ତ୍ର ନିଜର ଆସ୍ଥାନ ବଜାୟ ରଖିଛି ।

ଭାରତବର୍ଷ ବିଶ୍ୱର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର । ଭୌଗୋଳିକ କ୍ଷେତ୍ରଫଳ ଦୃଷ୍ଟିରୁ ଭାରତ ବିଶ୍ୱରେ ସପ୍ତମ ରାଷ୍ଟ୍ର । ଜନସଂଖ୍ୟା ଦୃଷ୍ଟିରୁ ଭାରତର ସ୍ଥାନ ବିଶ୍ୱରେ ଦ୍ୱିତୀୟରେ ରହିଛି । ଭାରତରେ ବିଶ୍ୱ ଭୂଖଣ୍ଡର ୨ ଦଶମିକ ୪ ପ୍ରତିଶତ ଅଞ୍ଚଳ ରହିଥିବାବେଳେ ବିଶ୍ୱ ଜନସଂଖ୍ୟାର ପ୍ରାୟ ୧୭ ଦଶମିକ ୫ ପ୍ରତିଶତ ଲୋକ ଭାରତରେ ବାସ କରନ୍ତି । ବିଶ୍ୱର ପ୍ରତି ଛଅ ଜଣ ବ୍ୟକ୍ତିଙ୍କ ମଧ୍ୟରେ ଜଣେ ହେଉଛନ୍ତି ଭାରତୀୟ । ଭାରତ ଏକ ଐତିହ୍ୟ ସଂପନ୍ନ ପୁରାତନ ରାଷ୍ଟ୍ର । ଏହାର ସଭ୍ୟତା ବିଶ୍ୱର ଅନ୍ୟତମ ପ୍ରାଚୀନ ସଭ୍ୟତା । ଭାରତୀୟ ସମ୍ବିଧାନ ହେଉଛି ବିଶ୍ୱରେ ଦୀର୍ଘତମ ଲିଖିତ ସମ୍ବିଧାନ ।

ଆମ ଦେଶର ପଡ଼ୋଶୀ ରାଷ୍ଟ୍ରମାନଙ୍କରେ ସାମରିକ ଶାସନ, ରାଜତନ୍ତ୍ରର ପ୍ରାଧାନ୍ୟ ଥିଲାବେଳେ ଓ ଗଣତନ୍ତ୍ର ବଞ୍ଚି ରହିଥିବା ଦେଶମାନଙ୍କରେ ରାଜନୈତିକ କ୍ଷମତା ହସ୍ତାନ୍ତର ଗଣତନ୍ତ୍ର ପ୍ରତି ଆହ୍ୱାନ ସୃଷ୍ଟି କରିଥିବାବେଳେ, ସାରା ଏସିଆ ମହାଦେଶରେ ଭାରତୀୟ ଗଣଦନ୍ତ୍ର ନିଜକୁ ସଶକ୍ତ ଓ ଜୀବନ୍ତ ଗଣତନ୍ତ୍ର ଭାବେ ପ୍ରତିପାଦିତ କରିପାରିଛି । ସ୍ୱାଧୀନ ଭାରତରେ ଗଣତନ୍ତ୍ରକୁ ସାମ୍ବିଧାନିକ ମର୍ଯ୍ୟାଦା ପ୍ରଦାନ କରାଯାଇଛି । ସମ୍ବିଧାନର ମୁଖବନ୍ଧରେ ଭାରତବର୍ଷକୁ ଗୋଟିଏ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରୂପେ ଗଢ଼ି ତୋଳିବା ପାଇଁ ସଂକଳ୍ପ କରାଯାଇଛି । ସମ୍ବିଧାନରେ ଭାରତୀୟ ଜନତାର ସାର୍ବଭୌମତ୍ୱ ପ୍ରତିଷ୍ଠିତ ହୋଇପାରିଛି, ଯାହା ଭାରତୀୟ ଗଣତନ୍ତ୍ରର ସ୍ଥିତି ଓ ପ୍ରଗତି ପାଇଁ ଏକ ଶୁଭସୂଚନା ।

ଗଣତନ୍ତ୍ରର ସୁଦୃଢ଼ୀକରଣ ନିମନ୍ତେ ବିକାଶ ଏକ ପ୍ରାକ୍‌ସର୍ତ୍ତ ବୋଲି କୁହାଯାଉଥିବାବେଳେ ସଦ୍ୟ ରାଜନୈତିକ ମତବାଦ ଅନୁସାରେ ବିକାଶ ନିମନ୍ତେ ଗଣତନ୍ତ୍ର ଅପରିହାର୍ଯ୍ୟ । ଭାରତର ଗ୍ରାମାଞ୍ଚଳରେ ୮୩ କୋଟିରୁ ଊର୍ଦ୍ଧ୍ୱ ଲୋକ ବାସ କରୁଛନ୍ତି । ଭାରତବର୍ଷ ଭଳି ବିଶ୍ୱର ବୃହତ ଗଣତାନ୍ତ୍ରିକ ରାଷ୍ଟ୍ରରେ କ୍ଷୁଧାର୍ତ୍ତମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନ (ଏଅକ୍ସ)ର ସଦ୍ୟ ଅନୁଧ୍ୟାନ ଅନୁଯାୟୀ ଏବେ ଭାରତରେ ପ୍ରାୟ ୨୨୫ ନିୟୁତରୁ ଅଧିକ ପୁରୁଷ, ମହିଳା ଓ ଶିଶୁ ଉପଯୁକ୍ତ ପରିମାଣର ଖାଦ୍ୟ ଅଭାବରୁ ପୁଷ୍ଟିହୀନତା ଭୋଗ କରୁଛନ୍ତି । ଏହିଭଳି ଖାଦ୍ୟାଭାବ ମଧ୍ୟରେ ଜୀବନ ଅତିବାହିତ କରୁଥିବା ଲୋକମାନଙ୍କ ସଂଖ୍ୟା ମୋଟ ଜନସଂଖ୍ୟାର ପ୍ରାୟ ୨୩ ପ୍ରତିଶତ କ୍ଷୁଧା ଭାରତ ଭଳି ଏକ ବିକାଶଶୀଳ ଦେଶରେ ଚରମ ଦାରିଦ୍ର୍ୟର ପରିପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହେଁ ।

ସ୍ୱାଧୀନତା ପ୍ରାପ୍ତିର ପଞ୍ଚଷଠି ବର୍ଷ ପରେ ମଧ୍ୟ ଆମ ଦେଶରେ ସରକାରୀ ତଥ୍ୟ ଅନୁସାରେ ୨୬୦ ନିୟୁତରୁ ଅଧିକ ଦରିଦ୍ର ଲୋକ ବାସ କରୁଛନ୍ତି । ଏମାନଙ୍କ ସଂଖ୍ୟା ମୋଟ ଲୋକସଂଖ୍ୟାର ପ୍ରାୟ ୨୪ ପ୍ରତିଶତ । ମାତ୍ର ଗବେଷକ ଓ ବେସରକାରୀ ସଂଗଠନମାନଙ୍କ ପକ୍ଷରୁ କରାଯାଇଥିବା

ଗବେଷଣାରୁ ଉପଲବ୍ଧ ତଥ୍ୟ ଅନୁସାରେ ଦାରିଦ୍ର୍ୟର ମାତ୍ରା ପ୍ରକୃତରେ ସରକାରୀ ତଥ୍ୟଠାରୁ ଯଥେଷ୍ଟ ଅଧିକ । ଭାରତର ଅଧିକାଂଶ ଲୋକ ଦାରିଦ୍ୟ ସୀମାରେଖା ତଳେ ରହିଥିବା ବେଳେ ଓ ଗ୍ରାମାଞ୍ଚଳର ଅଗଣିତ ଜନସାଧାରଣ ଖାଦ୍ୟାଭାବ ଓ ପୁଷ୍ଟିହୀନତାର ଶିକାର ହେଉଥିବାବେଳେ ଦେଶରେ ରାଜନୈତିକ ଗଣତନ୍ତ୍ର ସହିତ ଅର୍ଥନୈତିକ ଗଣତନ୍ତ୍ର ଅଧିକ ମଜବୁତ ହେବା ଆବଶ୍ୟକ । ନୋବେଲ ପୁରୁଷ୍କାର ପ୍ରାପ୍ତ ବିଶିଷ୍ଟ ଅର୍ଥନୀତି ବିଶାରଦ ପ୍ରଫେସର ଅମର୍ତ୍ତ୍ୟସେନଙ୍କ ମତରେ ଅନ୍ୟ ଯେକୌଣସି ଶାସନ ବ୍ୟବସ୍ଥାଠାରୁ ଗଣତନ୍ତ୍ର ଅଧିକ ଗ୍ରହଣୀୟ । କାରଣ ଏହା ମୌଳିକ ମାନବୀୟ ଅଧିକାର ସୁରକ୍ଷା କରିବା ଦିଗରେ ସମର୍ଥ ହୋଇପାରିଛି ।

ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ରାଷ୍ଟ୍ରର ଅର୍ଥନୀତି ସଂପୂର୍ଣ୍ଣଭାବେ ରାଜନୀତି ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । କିଛି ବର୍ଷ ତଳେ ଉତ୍କଟ ଖାଦ୍ୟାଭାବର ଶିକାର ହୋଇଥିବା ଚୀନ ନିଜର ଆର୍ଥିକ ବିକାଶ ନିମନ୍ତେ ସୀମାହୀନ ବିଶ୍ୱ ଅର୍ଥନୀତିକୁ ସ୍ୱାଗତ କରିବାକୁ ବାଧ ହୋଇଛି । ସାମ୍ୟବାଦୀ ଚୀନର ପ୍ରତି କୋଣେ ଅନୁକୋଣେ ଆଜି ପ୍ରତିଧ୍ୱନିତ ହେଉଛି ବିଶ୍ୱାୟନ ଓ ଉଦାର ଅର୍ଥନୀତିର ସ୍ୱର । ବିଶ୍ୱାୟନ ଓ ଆର୍ଥିକ ଉଦାରବାଦର ପ୍ରବର୍ତ୍ତନ ଫଳରେ ଭାରତ ଭଳି ଏକ ବିକାଶଶୀଳ ଦେଶରେ ରାଷ୍ଟ୍ରର ସର୍ବାଙ୍ଗୀନ ବିକାଶ କ୍ଷେତ୍ରରେ ଏକ ନୂତନ ଆହ୍ୱାନ ସୃଷ୍ଟି ହୋଇଛି । ୨୦୨୦ ମସିହା ପୂର୍ବରୁ ଭାରତକୁ ଏକ ବିକାଶଶୀଳ ରାଷ୍ଟ୍ରକୁ ବିକଶିତ ରାଷ୍ଟ୍ରରେ ପରିଣତ କରିବା ପାଇଁ ରାଷ୍ଟ୍ରନାୟକମାନଙ୍କର ପ୍ରଚେଷ୍ଟା ଜାରି ରହିଛି । ସେମାନଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରଭାବଶାଳୀ ଭୂମିକା ଗ୍ରହଣ କରୁଥିବା ଦେଶର ରାଜନୀତି ଓ ଭାରତୀୟ ଗଣତନ୍ତ୍ର ନିଜକୁ ପ୍ରସ୍ତୁତ କରୁଛନ୍ତି ।

ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସଶକ୍ତିକରଣ ନିମନ୍ତେ କାର୍ଯ୍ୟପାଳିକା, ବ୍ୟବସ୍ଥାପିକା ଓ ନ୍ୟାୟପାଳିକାର ବିଶେଷ ଆବଶ୍ୟକତା ରହିଥିବାବେଳେ ଶାସନ ବ୍ୟବସ୍ଥାକୁ ଲୋକାଭିମୁଖୀ କରିବା ଓ ଜନସାଧାରଣଙ୍କୁ ତଥ୍ୟ ପ୍ରଦାନ କରିବା ଦିଗରେ ଗଣମାଧ୍ୟମର ଏକ ବିଶେଷ ଭୂମିକା ରହିଛି । ସେଥିପାଇଁ ଗଣମାଧ୍ୟମକୁ ଭାରତୀୟ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଓ ଜାଗ୍ରତ ପ୍ରହରୀ ଭାବେ ଅଭିହିତ କରାଯାଇଛି । ଯୁକ୍ତରାଷ୍ଟ୍ର ଆମେରିକାର ଜଣେ ବିଶିଷ୍ଟ ରାଜନେତା ଲି ହାମିଲଟନ୍ କହିଥିଲେ– 'ଗଣତନ୍ତ୍ର ସୂଚନା ଦ୍ୱାରା ସମୃଦ୍ଧ ହୁଏ, ଗୋପନୀୟତା ଏହାର ଶତ୍ରୁ ।' ଆଜିର ଜ୍ଞାନ ଓ ବିଜ୍ଞାନର ଯୁଗରେ ଗଣମାଧ୍ୟମର କାର୍ଯ୍ୟକାରିତାରେ ମଧ୍ୟ ବ୍ୟାପକ ପରିବର୍ତ୍ତନ ସଂଘଟିତ ହୋଇଛି ।

ପରିବର୍ତ୍ତନ ସହ ତାଳଦେଇ ଆଗେଇବା ପାଇଁ ଆମ ଦେଶରେ ରାଜନୀତିର ଦୁଇଟି ଉପାଦାନ ରହିଛି ବୋଲି କୁହାଯାଉଛି । ଗୋଟିଏ ରାଜନୈତିକ ରାଜନୀତି ହୋଇଥିବାବେଳେ ଅନ୍ୟଟି ହେଉଛି ବିକାଶ ରାଜନୀତି । ସମାଜରେ ସବୁ ସମୟରେ ରାଜନୈତିକ ରାଜନୀତିର ବିଶେଷ ପ୍ରଭାବ ପରିଲକ୍ଷିତ ହେଉଥିବାବେଳେ ଗଣମାଧ୍ୟମ ସେଥିରୁ ମୁକ୍ତ ହୋଇ ରହିପାରୁ ନାହିଁ । ଅଧିକାଂଶ ଗଣମାଧ୍ୟମ ରାଜନୈତିକ ରାଜନୀତିକୁ ବିଶେଷ ପ୍ରାଧାନ୍ୟ ଦେଉଛନ୍ତି । କିନ୍ତୁ ଏବେ ଦେଶ ଆଗରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ବିକାଶ ରାଜନୀତି । ଗଣମାଧ୍ୟମର ଏ ଦିଗରେ ଏକ ପ୍ରମୁଖ ଭୂମିକା ରହିଛି । ଭାରତୀୟ ପ୍ରେସ ପରିଷଦ ପକ୍ଷରୁ ଜାତୀୟ ପ୍ରେସ ଦିବସ ଉପଲକ୍ଷେ ଆୟୋଜିତ ଏକ ଆଲୋଚନା ଚକ୍ରରେ ଯୋଗଦେଇ ଏକଥା ସ୍ୱୀକାର କରିଥିଲେ ଭାରତର ତତ୍‌କାଳୀନ ମହାମାନ୍ୟ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. ଅବଦୁଲ କଲାମ ମହୋଦୟ ।

ଏକବିଂଶ ଶତାବ୍ଦୀର ଗଣମାଧ୍ୟମ ଜନସାଧାରଣଙ୍କୁ କେବଳ ସୂଚନା ପ୍ରଦାନ କରୁନାହିଁ, ଶିକ୍ଷା ଓ ସଂଚାର ବ୍ୟବସ୍ଥାରେ ସାହାଯ୍ୟ କରିବା ସହିତ ଉନ୍ନତମାନର ମନୋରଞ୍ଜନ ମଧ୍ୟ ଯୋଗାଇ ଆସୁଛି । ଆଜିର ଯୁଗରେ ମୁଦ୍ରଣ ମାଧ୍ୟମ (Print Media)ସହିତ ଅଭିବୈଦ୍ୟୁତିକ ଗଣମାଧ୍ୟମ (Electronic Media)ମଧ୍ୟ ସୂଚନା ପ୍ରଦ୍ୟୋଗିକା ଦ୍ୱାରା ସୁସଜ୍ଜିତ ହୋଇ ଦେଶର ବିକାଶ ମାର୍ଗରେ ସହାୟକ ହୋଇପାରିଛି ।

ଭାରତରେ ରେଡ଼ିଓର ପ୍ରଥମ କାର୍ଯ୍ୟକ୍ରମ ୧୯୨୩ ମସିହାରେ ବମ୍ବେଠାରେ ପ୍ରସାରିତ ହୋଇଥିଲା । ୧୯୩୬ ମସିହାରୁ ଅଲଇଣ୍ଡିଆ ରେଡ଼ିଓ କାର୍ଯ୍ୟ କରିଥିଲା । ୧୯୫୭ ମସିହାଠାରୁ ଏହା 'ଅକାଶବାଣୀ' ଭାବେ ପରିଚିତ ହେଲା । ସ୍ୱାଧୀନତା ସମୟରେ ଏହା ଦେଶର କ୍ଷେତ୍ରଫଳର ୨ ଦଶମିକ ୫ ପ୍ରତିଶତ ଅଞ୍ଚଳ ଓ ୧୧ ପ୍ରତିଶତ ଲୋକମାନଙ୍କ ନିକଟରେ ପହଞ୍ଚି ପାରୁଥିଲା । ବର୍ତ୍ତମାନ ଏହି ସେବା ୯୨ ପ୍ରତିଶତରୁ ଅଧିକ ଭୌଗୋଳିକ ଅଞ୍ଚଳ ଓ ୯୯ ପ୍ରତିଶତରୁ ଅଧିକ ଭାରତୀୟମାନଙ୍କ ପାଖରେ ପହଞ୍ଚି ପାରୁଛି । ଆକାଶବାଣୀ ପକ୍ଷରୁ ଗ୍ରାମ୍ୟ ବିକାଶ ସମ୍ପର୍କରେ ବହୁବିଧ କାର୍ଯ୍ୟକ୍ରମ ପ୍ରସାରିତ ହେଉଛି । ପାଣିପାଗର ପୂର୍ବାଭାସଠାରୁ ଆରମ୍ଭ କରି କୃଷି ସୂଚନା ପର୍ଯ୍ୟନ୍ତ ବିଭିନ୍ନ ତଥ୍ୟ କୃଷକମାନଙ୍କ ସୁବିଧା ନିମନ୍ତେ ପ୍ରଦାନ କରାଯାଉଛି ।

ଭାରତରେ ୧୯୫୯ ମସିହାରେ ଦୈନିକ ମାତ୍ର ଅଧଘଣ୍ଟାଏ ସମୟ ପାଇଁ ଟେଲିଭିଜନ କାର୍ଯ୍ୟକ୍ରମ ପ୍ରସାରିତ

ହେଉଥିଲା । ୧୯୭୬ ମସିହାରେ ଦୂରଦର୍ଶନ ପ୍ରତିଷ୍ଠିତ ହେଲା । ୧୯୮୨ ମସିହାରେ ଦିଲ୍ଲୀରେ ଅନୁଷ୍ଠିତ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ସମୟରେ ଦେଶରେ ରଙ୍ଗୀନ୍ ଟେଲିଭିଜନ ପ୍ରଚଳନ ଆରମ୍ଭ ହେଲା । ଜୁନ୍ ୨୦୦୬ ମସିହା ସୁଦ୍ଧା ଦେଶର ମୋଟ କ୍ଷେତ୍ରଫଳର ୮୦ ପ୍ରତିଶତ ଅଞ୍ଚଳ ଓ ୯୧ ପ୍ରତିଶତ ଲୋକଙ୍କ ନିକଟରେ ଦୂରଦର୍ଶନର କାର୍ଯ୍ୟକ୍ରମ ପହଞ୍ଚିପାରୁଛି । ଦୂରଦର୍ଶନ ଦେଶର ସାମାଜିକ, ଆର୍ଥିକ ପରିବର୍ତ୍ତନକୁ ତ୍ୱରାନ୍ୱିତ କରିବା, ଜାତୀୟ ସଂହତିର ବିକାଶ, ଜ୍ଞାନର ପ୍ରସାରଣ, ବୈଜ୍ଞାନିକ ଅଗ୍ରଗତିକୁ ଲୋକଙ୍କ ପାଖରେ ପହଞ୍ଚାଇବା, ପରିବେଶ ସୁରକ୍ଷା, ପରିବାର କଲ୍ୟାଣ ମହିଳା ଓ ଶିଶୁ ବିକାଶ ଦିଗରେ ବିଶେଷ ଅବଦାନ ଯୋଗାଇ ଆସୁଛି । ଏବେ ଟେଲିଭିଜନ ମାଧ୍ୟମରେ ୨୦୦ରୁ ଅଧିକ ଚ୍ୟାନେଲ ଦେଖିବାର ସୁଯୋଗ ମିଳୁଛି । ତାହା ମଧ୍ୟରୁ ପ୍ରାୟ ୮୦ରୁ ଅଧିକ ସମ୍ବାଦ ପ୍ରସାରଣ କରୁଥିବା ଚ୍ୟାନେଲ ରହିଛି । ଆମ ଦେଶରେ ଇଣ୍ଟରନେଟ ବ୍ୟବହାରକାରୀମାନଙ୍କର ସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି ।

ମାର୍ଚ୍ଚ ୨୦୦୬ ମସିହା ସୁଦ୍ଧା ଆମ ଦେଶରେ ପଞ୍ଜିକୃତ ହୋଇଥିବା ମୋଟ ସମ୍ବାଦପତ୍ରର ସଂଖ୍ୟା ୬୨,୫୫୦ ହୋଇଥିବାବେଳେ ସେମାନଙ୍କ ମଧ୍ୟରୁ ଦୈନିକ ସମ୍ବାଦପତ୍ରର ସଂଖ୍ୟା ଥିଲା ପ୍ରାୟ ୬୮୦୦ । ଅଧିକାଂଶ ସମ୍ବାଦପତ୍ର ପୁଞ୍ଜିପତି, ଶିଳ୍ପପତି ତଥା ବିଭିନ୍ନ କରପୋରେଟ୍ ହାଉସ ଦ୍ୱାରା ପରିଚାଳିତ । ବର୍ତ୍ତମାନ ଆମ ଦେଶରେ ସମ୍ବାଦପତ୍ରର ସଂଖ୍ୟା ୭୦ ହଜାରକୁ ଟପିଗଲାଣି । ଭାରତରେ ଦୈନିକ ବିଭିନ୍ନ ସମ୍ବାଦପତ୍ରର ପ୍ରାୟ ୧୦୦ ନିୟୁତରୁ ଅଧିକ କପି ବିକ୍ରୟ ହେଉଛି । ସମ୍ବାଦପତ୍ର ବିକ୍ରୟ ସଂଖ୍ୟା ପୃଥିବୀରେ ଅନ୍ୟଦେଶ ତୁଳନାରେ ଭାରତରେ ବୋଧହୁଏ ସର୍ବାଧିକ । ଦେଶରେ ମୁଦ୍ରଣ ମାଧ୍ୟମ ନୀତିର ସମୀକ୍ଷା କରାଯାଇ ଏଥିରେ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜିନିବେଶର ମାତ୍ରା ୨୬ ପ୍ରତିଶତରୁ ୭୪ ପ୍ରତିଶତକୁ ବୃଦ୍ଧି କରାଯାଇଛି । ଏବେ ସମ୍ବାଦପତ୍ରମାନଙ୍କରେ ବିଜ୍ଞାପନ ଅଧିକ ଛାପା ଯାଉଥିବାବେଳେ ସମ୍ବାଦ ପାଇଁ ପୃଷ୍ଠାର ଅଭାବ ଦେଖା ଦେଉଛି ।

ଦେଶରେ ଏକାଦଶ ପଞ୍ଚବାର୍ଷିକ ଯୋଜନାର ପରିସମାପ୍ତି ପରେ ୨୦୧୨ ମସିହା ଏପ୍ରିଲ ମାସରୁ ବହୁ ଆକାଂକ୍ଷିତ ଦ୍ୱାଦଶ ପଞ୍ଚବାର୍ଷିକ ଯୋଜନାର ଶୁଭାରମ୍ଭ ହୋଇଛି । ଏହି ଯୋଜନାର ମୁଖ୍ୟ ଆଭିମୁଖ୍ୟ ହେଉଛି ଦ୍ରୁତ, ନିରନ୍ତର ଏବଂ ଅଧିକ ଅନ୍ତର୍ଭୁକ୍ତ ବିକାଶ । ଅନ୍ତର୍ଭୁକ୍ତ ବିକାଶ ଉପରେ ଏହି ଯୋଜନା କାଳରେ ଗୁରୁତ୍ୱ ପ୍ରଦାନ କରାଯାଉଥିବାରୁ କୃଷି ବିକାଶ ସହିତ, ଶିକ୍ଷା, ସ୍ୱାସ୍ଥ୍ୟ, ମହିଳା ଓ ଶିଶୁ କଲ୍ୟାଣ ସମେତ ବିଭିନ୍ନ ସାମାଜିକ କ୍ଷେତ୍ର ବିକାଶ ଦିଗରେ ଅଗ୍ରାଧିକାର ପ୍ରଦାନ କରାଯାଉଛି । ଏହି ଯୋଜନା କାଳରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (GDP) ର ଅଭିବୃଦ୍ଧି ହାର ୯ ପ୍ରତିଶତ ହେବ ବୋଲି ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ପ୍ରସ୍ତାବିତ ଜାତୀୟ ଖାଦ୍ୟ ସୁରକ୍ଷା ଆଇନ୍ କାର୍ଯ୍ୟକାରୀ ହେଲେ ଦେଶରେ ଅଧିକ ଖାଦ୍ୟ ଶସ୍ୟର ଆବଶ୍ୟକତା ଦେଖା ଦେବ । ଦ୍ୱାଦଶ ପଞ୍ଚବାର୍ଷିକ ଯୋଜନାରେ କୃଷି କ୍ଷେତ୍ରରେ ୪ ପ୍ରତିଶତ ଅଭିବୃଦ୍ଧି ହାସଲ ନିମନ୍ତେ ପ୍ରଚେଷ୍ଟା କରାଯିବ ବୋଲି ଚିଠା ଯୋଜନାରେ ଗୁରୁତ୍ୱ ପ୍ରଦାନ କରାଯାଇଛି । କୃଷିକମାନଙ୍କୁ ସେମାନଙ୍କ ମୋବାଇଲ ଫୋନ୍ ଓ ଏଫ୍ଏମ୍ ରେଡ଼ିଓ ଯୋଗେ ଗଣମାଧ୍ୟମ ପକ୍ଷରୁ ଅଧିକ ସୂଚନା ଯୋଗଇ ଦିଆଯିବା ଆବଶ୍ୟକ ।

ସ୍ୱାଧୀନ ଭାରତରେ ପ୍ରେସର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବା ନିମନ୍ତେ ୧୯୬୬ ମସିହାରେ ଭାରତୀୟ ପ୍ରେସ ପରିଷଦର ଜନ୍ମ । ପ୍ରତିବର୍ଷ ଆମ ଦେଶରେ ନିଭେମ୍ବର ୧୬ ତାରିଖକୁ ଜାତୀୟ ପ୍ରେସ ଦିବସ ଭାବେ ପାଳନ କରାଯାଉଛି । ଦେଶରେ ଜାରି ହୋଇଥିବା ଜରୁରିକାଳୀନ ପରିସ୍ଥିତି ପରେ ୧୯୭୯ ମସିହାରେ ଭାରତୀୟ ପ୍ରେସ ପରିଷଦର ପୁନର୍ଗଠନ ହୋଇଥିଲା । ଏକବିଂଶ ଶତାବ୍ଦୀର ସୂଚନା ପ୍ରଯୁକ୍ତି ବିଦ୍ୟାର ଯୁଗରେ ଗଣମାଧ୍ୟମ ଏବେ ଅଧିକ ମାତ୍ରାରେ ଗ୍ରାମାଭିମୁଖୀ ହେବାର ଜରୁରୀ ଆବଶ୍ୟକତା ଦେଖା ଦେଇଛି । ଏବେ ଦେଶ ଆଗରେ ଦାରିଦ୍ର୍ୟ, ବେରୋଜଗାର, ଅଶିକ୍ଷା, ଖାଦ୍ୟାଭାବ ଭଳି ବହୁ ସମସ୍ୟା ରହିଛି । ବିକଶିତ ଭାରତ ଗଠନ ନିମନ୍ତେ ଚାଲିଥିବା ବିକାଶ ପ୍ରକ୍ରିୟାର ଗଣମାଧ୍ୟମ ସକ୍ରିୟ ଅଂଶୀଦାର ହେବାର ଆବଶ୍ୟକତା ଦେଖା ଦେଇଛି । ଏକ ମୁକ୍ତ, ଦାୟିତ୍ୱ ସଂପନ୍ନ ଗଣମାଧ୍ୟମ ଜରିଆରେ ଆଜିର ଭାରତ ବିକାଶ ପଥରେ ଅଗ୍ରଗତି କରିବା ସହିତ ଏକ ଦୁର୍ନୀତିମୁକ୍ତ, କ୍ଷୁଧାମୁକ୍ତ, ବ୍ୟାଧିମୁକ୍ତ ଭାରତ ଗଠିତ ହୋଇପାରିବ । ଭାରତ ଆଗାମୀ ଦିନରେ ବିଶ୍ୱର ଏକ ବୃହତ ଅର୍ଥନୀତିରେ ପରିଣତ ହେବାକୁ ଯାଉଛି । ଦେଶର ପରିବର୍ତ୍ତିତ ପରିସ୍ଥିତିରେ ବିକାଶ କାର୍ଯ୍ୟକ୍ରମ ସହିତ ତାଳଦେଇ ଆଗକୁ ଆଗେଇବା ପାଇଁ ଭାରତୀୟ ଗଣମାଧ୍ୟମ ନିଜକୁ ପ୍ରସ୍ତୁତ କରିବା ଆବଶ୍ୟକ ।

ଶାନ୍ତିବଜାର, ପୋ : ଧର୍ମଶାଳା,
ଜି : ଯାଜପୁର-୭୫୫୦୦୮

# ବିବର୍ତ୍ତନର ପୃଥିବୀ: ପରିବର୍ତ୍ତିତ ସାମ୍ବାଦିକତା

ଦେବୁ ପଟ୍ଟନାୟକ

ଦିନ ଥିଲା, ଯେତେବେଳେ ସାମ୍ବାଦିକତାକୁ ସେବା ଭାବରେ ଗଣାଯାଉଥିଲା । ତାହା ଥିଲା, ସ୍ୱାଧୀନତା ସଂଗ୍ରାମର ସମୟ । ବ୍ରିଟିଶ ଶାସକର ମେରିରାୟ ଶାସନ ବିରୁଦ୍ଧରେ ସାରା ଭାରତରେ ଜନମତ ଭଳି ସାମ୍ବାଦିକମାନେ ମଧ୍ୟ ମତ ପ୍ରକାଶ କରୁଥିଲେ । ନେତା, ଜନତା, ଅଭିନେତା, ଶିକ୍ଷକ, ଶ୍ରମିକ, ଡାକ୍ତର, ଇଞ୍ଜିନିୟର ସମସ୍ତଙ୍କର ଲକ୍ଷ୍ୟ ସ୍ୱାଧୀନତା ଥିଲା ଓ ତାକୁ ହାସଲ କରିବାର ମାଧ୍ୟମ ଥିଲା ଲଢ଼େଇ । ଏ ସମୟର ସାମ୍ବାଦିକମାନେ ଲୋକମତକୁ ଠିକ୍ ଭାବରେ ବୁଝି ପାରିଥିଲେ । ଆହୁରି ମଧ୍ୟ ବୁଝିପାରିଥିଲେ ଦେଶର ଆତ୍ମାକୁ ଓ ଆହ୍ୱାନକୁ । ଫଳତଃ ସେମାନେ ଜେଲ ଯାଉଥିଲେ ବା ଲାଠିମାଡ଼ ଖାଉଥିଲେ । କେତେକଙ୍କୁ ମଧ୍ୟ ଗୁଳିମାଡ଼ରେ ଶହୀଦ ହେବାକୁ ପଡ଼ିଛି । ଅତ୍ୟାଚାରୀ ଶାସକର ଏସବୁ ଅତ୍ୟାଚାରକୁ ତୁଚ୍ଛ କରି ଦେଇଥିବା ତତ୍କାଳୀନ ସାମ୍ବାଦିକ ଓ ସମ୍ବାଦପତ୍ର ମାଲିକମାନଙ୍କର ଲକ୍ଷ୍ୟ ଥିଲା ସ୍ୱାଧୀନତା ପ୍ରାପ୍ତି ଓ ସାଧନ ଥିଲା ସାମ୍ବାଦିକତା ।

ଇଂରେଜମାନେ ଏ ଦେଶ ଛାଡ଼ି ଚାଲିଗଲେ । ଦେଶ ସ୍ୱାଧୀନ ହେଲା । ସ୍ୱାଧୀନତା କାଳରେ ରାଜନେତାମାନେ ଲୋକହିତ ପାଇଁ ନିଜ ଜୀବନକୁ ଗୁଳି ଆଗରେ ତୁଚ୍ଛ କରିଥିଲେ । କ୍ରମେ ପରବର୍ତ୍ତୀ କାଳରେ ନେତାଙ୍କ କ୍ଷମତା ଲୋଭ ଦେଶକୁ ମହରଗରୁ ନେଇ କାନ୍ତାରରେ ପକାଇ ଦେଲା । ରାଷ୍ଟ୍ରହିତ ପାର୍ଟି ହାତରେ ରୂପାନ୍ତରିତ ହୋଇଗଲା । ଗଣତନ୍ତ୍ରକୁ ପୁଷ୍ଟ କରିବା ପାଇଁ ୧୯୫୨ ମସିହାରେ ହୋଇଥିବା ପ୍ରଥମ ଲୋକସଭା ନିର୍ବାଚନ ଗଣତନ୍ତ୍ରକୁ ସୁଦୃଢ଼ କରିବା ନିମିତ୍ତ ଥିଲା । କ୍ରମେ ନିର୍ବାଚନ ରାଜନୀତିକୁ ପୁଷ୍ଟ କରିବାକୁ ସବୁମନ୍ତେ ଲାଗିପଡ଼ିଲା । ସମାଜର, ଦେଶର, ନାଗରିକଙ୍କର ଓ ନେତାଙ୍କର ଚେହେରା, ଚରିତ୍ରର ସଂଜ୍ଞା ସମୟ କ୍ରମେ ବଦଳିଗଲା । ଆମ୍ବ ଗଛରେ ଆମ୍ବଡ଼ା ଫଳିଲା । ଏମିତି ସାମାଜିକ ଚେତନାର ପରିବର୍ତ୍ତନ ଅବକ୍ଷୟ ଆଡ଼କୁ ଗତି କଲାବେଳେ ସାମ୍ବାଦିକମାନେ ସେମାନଙ୍କର ଚରିତ୍ରର ସଂଜ୍ଞା ଓ ଶୈଳୀ କିପରି ଅପରିବର୍ତ୍ତିତ ରଖିପାରିଥାନ୍ତେ ! ସେମାନଙ୍କ ମଧ୍ୟରୁ କିଛି ଏଥିରୁ ନିଜକୁ ମୁକ୍ତି ରଖିପାରିଲେ ନାହିଁ । ସାମ୍ବାଦିକତା ସେବାରୁ ବୃତ୍ତିକୁ ରୂପାନ୍ତରିତ ହୋଇଗଲା । ସାମ୍ବାଦିକତା ଇତିହାସ ଆରମ୍ଭ ଦିନରୁ ପ୍ରତିଷ୍ଠିତ ଜନସେବାର ମୂଳମନ୍ତ୍ରଟି ରୂପାନ୍ତରିତ ହେଲା ପରେ ସାଧନା, ଶୈଳୀରେ ବ୍ୟାପକ ପରିବର୍ତ୍ତନ ଘଟିଲା । ଫଳତଃ ସ୍ୱାଧୀନତା ପ୍ରାପ୍ତିର ତିନି ଦଶକ ମଧ୍ୟରେ ସାମ୍ବାଦିକତା ବ୍ୟବସାୟ ଦୌଡ଼ରେ ସାମିଲ ହୋଇଗଲା । ସାମ୍ବାଦିକମାନେ ପ୍ରଫେସନାଲ ହୋଇଗଲେ ଓ ଭାରତୀୟ ସମ୍ବାଦପତ୍ର ପ୍ରାକ୍ ସ୍ୱାଧୀନତାବେଳେ ଲାଭ କରିଥିବା ନିଜର ସ୍ୱତନ୍ତ୍ର ପରିଚୟ ପ୍ରାୟତଃ ହରାଇଲା ।

କିନ୍ତୁ ତା' ପରର ଘଟଣା ଥିଲା ଯେମିତି ଦୁଃଖଦାୟକ, ସେମିତି ଆଶ୍ଚର୍ଯ୍ୟଜନକ । କାରଣ ସାମ୍ବାଦିକତାରେ ପ୍ରାକ୍ ସ୍ୱାଧୀନତା କାଳରେ ସେବା ମନୋବୃତ୍ତି ନ ଥିଲା କି ସ୍ୱାଧୀନତା ପରର ପ୍ରଫେସନାଲ ମନୋବୃତ୍ତି ନ ଥିଲା । ଡାଲି, ଚାଉଳ, ତେଲ, ଲୁଣ ବିକ୍ରୀ ଭଳି ଏକ ବ୍ୟବସାୟ ପାଲଟିଗଲା । ସମ୍ବାଦପତ୍ରର ମାଲିକମାନେ ନ୍ୟାୟ ଅନ୍ୟାୟ ନିର୍ବିଶେଷରେ ବ୍ୟବସାୟରେ ସଂଶ୍ଳିଷ୍ଟ ହୋଇଗଲେ ଓ ସାମ୍ବାଦିକ ବୃତ୍ତି ଧନଲୋଭରେ ଲିପ୍ତ ହୋଇଗଲା । କିଛି ସାମ୍ବଦିକ ରାତାରାତି ଅପାର ସୁଖ ସମୃଦ୍ଧି ଲାଭ କଲେ । ଏ ବୃତ୍ତିରେ ସାଧନ ଓ ତା'ର ଶୁଦ୍ଧତା ଦୁଇଟି ଯାକ ନିଜର ମହତ୍ତ୍ୱ ହରାଇଲେ । ପତ୍ରପତ୍ରିକାର ମାଲିକମାନେ ସମ୍ବାଦପତ୍ରର ମୌଳିକ

ଉଦ୍ଦେଶ୍ୟରୁ ଦୂରେଇ ଯାଇ ବିଜ୍ଞାପନ ଯୋଗାଡ଼ରେ ଲାଗିଲେ । ନୂଆ କୌଶଳ, ନୂଆ ଢଙ୍ଗରେ ସମ୍ବାଦକୁ ରଙ୍ଗେଇ ସାମ୍ବାଦିକମାନେ ପେଟପାଟଣାରେ ବୁଡ଼ିଗଲେ । ଗୋଟିଏ ସମ୍ବାଦ ପଛରେ ଥିବା ସତ୍ୟକୁ ଅନ୍ୱେଷଣ ପାଇଁ ସାମ୍ବାଦିକଙ୍କ ଆଗ୍ରହ ରହିଲା ନାହିଁ କି ସମ୍ବାଦପତ୍ରର ମାଲିକମାନେ ସେମାନଙ୍କୁ ସେଥିପାଇଁ ପ୍ରୋତ୍ସାହିତ ବି କଲେ ନାହିଁ ।

ବଡ଼ ବଡ଼ ସମ୍ବାଦପତ୍ରମାନେ ସେମାନଙ୍କର ଗ୍ରାହକ ସଂଖ୍ୟା ବଢ଼ାଇବା ପାଇଁ ଓ ବିଜ୍ଞାପନ ଆହରଣ ପାଇଁ ସର୍ବଦା ବ୍ୟସ୍ତ ଥିବାରୁ ସମ୍ବାଦ ସଂଗ୍ରହ ପାଇଁ ପୂର୍ବରୁ ଚଳି ଆସୁଥିବା ତରିକା ସବୁ ବଦଳିବାରେ ଲାଗିଲା । ଫଳରେ 'ପ୍ରେସ୍'ର ସ୍ୱତନ୍ତ୍ରତା ସମାଚାର ପତ୍ର ମାଲିକଙ୍କର ସ୍ୱଚ୍ଛଳତାରେ ସୀମିତ ରହିଲା । ଏ ଥିଲା ସ୍ୱାଧୀନତା ପରର ସମ୍ବାଦ, ସମ୍ବାଦପତ୍ର, ସାମ୍ବାଦିକ ଓ ତା'ର ମାଲିକମାନଙ୍କର ଚିତ୍ରପଟ । ସବୁ ସାମ୍ବାଦିକ ଓ ମାଲିକମାନେ ଯେ ଏ ଅବକ୍ଷୟର ଶୀକାର ହୋଇଗଲେ ତା' ନୁହେଁ, ଯେଉଁ କେତେଜଣ ନିର୍ଭୀକ ସାମ୍ବାଦିକ ବା ସମ୍ବାଦପତ୍ର ମାଲିକ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ଚେଷ୍ଟା କଲେ ସେମାନଙ୍କୁ ପ୍ରାକ୍ ସ୍ୱାଧୀନତା କାଳରେ ସ୍ୱେଚ୍ଛାଚାରୀ ଶାସକର ଦଣ୍ଡଭଳି ଦଣ୍ଡ ଭୋଗିବାକୁ ପଡ଼ିଲା । ସମ୍ବାଦପତ୍ରର ମାଲିକମାନେ ସେମାନଙ୍କର ପତ୍ରିକାକୁ ବଂଚାଇବାର ଅନ୍ତହୀନ ସଂଘର୍ଷରେ ବୁଡ଼ି ରହିଲେ । ସ୍ଥଳ ବିଶେଷରେ ଏହି ସମ୍ବାଦପତ୍ରଗୁଡ଼ିକର ଅକାଳ ମୃତ୍ୟୁ ଘଟିଲା ।

ଏସବୁ ସମସ୍ୟାକୁ ବଳେଇ ଯାଇ ଠିଆ ହେଲା ଏକ ନୂଆ ସମସ୍ୟା । ଯାହାକି ସମଗ୍ର ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଏକ ମସ୍ତବଡ଼ ଆହ୍ୱାନ । ଗତ ଦୁଇ ଦଶକରେ ସମ୍ବାଦପତ୍ରରେ ସଂପାଦକତା ପ୍ରତି ହସ୍ତକ୍ଷେପ ଜନିତ ଅବମୂଲ୍ୟାୟନ ଥିଲା ଏ ସମସ୍ୟାର ରୂପରେଖ । ସମାଚାର ପତ୍ରର ମାଲିକମାନେ କ୍ଷମତାର ସବୁ ସୂତ୍ରକୁ ନିଜ ହାତମୁଠାରେ ରଖି ସମାଚାର ପ୍ରକାଶନର ଉତ୍ତର ଦାୟିତ୍ୱ ସଂପାଦକ ହାତରେ ସମର୍ପି ଦେଲେ । ଏହା ଯମରାଜ ଆତ୍ମାଟିକୁ ନିଜ ହାତକୁ ନେଇ ଶରୀରଟି ଲୋକଙ୍କ ପାଖରେ ଛାଡ଼ି ଯିବା ଭଳି ଥିଲା । ସମ୍ବାଦପତ୍ରର ମାଲିକଗତ ସମ୍ପାଦକ ଓ ବୃତ୍ତିଗତ ସମ୍ପାଦକ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହେଲା । ଏହି ବ୍ୟବସ୍ଥା ଯୋଗୁଁ ଯାହା ସମ୍ବାଦପତ୍ରର ଶ୍ରେୟ ଥିଲା, ତାହା ମାଲିକଙ୍କର ପ୍ରାପ୍ୟ ଦେଲାବେଳେ ତାହା ନିନ୍ଦନୀୟ ଥିଲା । ସମ୍ବାଦପତ୍ରର ପ୍ରତିଟି ଶବ୍ଦ, ପ୍ରତିଟି ଆବେଦନ, ପ୍ରତିଟି ଆଭିମୁଖ୍ୟରେ ସଂପାଦକଙ୍କର ବୈଶିଷ୍ଟ୍ୟ ରହିବା ଜରୁରୀ ଥିବାବେଳେ ତା'ର ସ୍ୱାଧୀନତା ହ୍ରାସ ପାଉଥିବାରୁ ସମ୍ବାଦପତ୍ର ତା'ର ମୌଳିକ ଉଦ୍ଦେଶ୍ୟ କିପରି ପୂରଣ କରିପାରୁଛି ବୋଲି ଏକ ପ୍ରଶ୍ନ ଯୋଡ଼ି ହୋଇଗଲା ।

ଆଜିର ଇଲେକ୍ଟ୍ରୋନିକ୍ସ ମିଡ଼ିଆରେ ପ୍ରତି ଅଧଘଣ୍ଟାରେ ସମ୍ବାଦ ପରିବେଷଣ କରାଯାଉଛି । କିନ୍ତୁ ସାଧାରଣ ଜନତା ଇଲେକ୍ଟ୍ରୋନିକ୍ସ ମିଡ଼ିଆରୁ କେବଳ ସମ୍ବାଦର ବିବରଣୀ ବ୍ୟତୀତ ତା'ର ପୃଷ୍ଠଭୂମି, ସମ୍ଭାବିତ ପ୍ରଭାବ ଆଦି ଜାଣିବାକୁ ଉତ୍ସୁକ ଥାଆନ୍ତି । ସମ୍ବାଦର ବିଶ୍ଳେଷଣ ପାଇବାକୁ ଅନେକ ଅପେକ୍ଷା କରନ୍ତି । ଏସବୁ କ୍ଷେତ୍ରରେ ସମ୍ପାଦକର ସ୍ୱାଧୀନତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମାତ୍ର ବୃତ୍ତିଗତ ଅନଭିଜ୍ଞ ମଣ୍ଡଳୀ ହାତରେ ସମ୍ବାଦର ସ୍ୱାଧୀନତା ବନ୍ଧା ପଡ଼ିଥିବାରୁ ଏ କ୍ଷେତ୍ରରେ ଏକ ଚରମ ଦୁର୍ଦ୍ଦଶା ଦେଖାଦେଇଛି ।

ସଂପାଦକୀୟରେ ହସ୍ତକ୍ଷେପ ଅର୍ଥ ସମ୍ବାଦପତ୍ରର ଅବମୂଲ୍ୟାୟନ । କିଛି ସମ୍ବାଦପତ୍ରର ମାଲିକମାନେ ସେମାନଙ୍କର ପ୍ରସାରଣ ସଂଖ୍ୟାରେ ଅଭିବୃଦ୍ଧି ଘଟିଛି ବୋଲି ଦାବି କରି ଏସବୁକୁ ଅସ୍ୱୀକାର କରନ୍ତି । ସ୍ୱାଧୀନତା ପରେ ସାକ୍ଷରତା ହାରରେ ଯେଉଁ ଅଭିବୃଦ୍ଧି ଘଟିଛି ସେଇ ତୁଳନାରେ ସମ୍ବାଦପତ୍ରର ବ୍ୟାବହାରିକ ସଂଖ୍ୟା ବୃଦ୍ଧି ପାଇଛି କି ?

ଏସବୁ ସମସ୍ୟାକୁ ସମୀକ୍ଷା କଲେ ଜଣାଯାଏ ଆଜିର ସମ୍ବାଦପତ୍ର ଓ ସାମ୍ବାଦିକତାରେ ବ୍ୟାପକ ପରିବର୍ତ୍ତନ ଘଟିଛି । ଏହି ପରିବର୍ତ୍ତନ ପ୍ରେସ୍‌ରେ ସାମାଜିକ ନୈତିକତାର ସ୍ୱତନ୍ତ୍ରତା ପ୍ରତି କୁଠାରଘାତ ଅଟେ । ଆଜିର ସାମ୍ବାଦିକ ନିଜର ବୃତ୍ତି ଅପେକ୍ଷା ନିଜର ଚାକିରି ସମ୍ଭାଳିବାରେ ଏତେ ବ୍ୟସ୍ତ ଅଛି ଯେ ସେ ମାଲିକର ଆନନ୍ଦ ବା ନିରାନନ୍ଦ ପ୍ରତି ବେଶୀ ଧ୍ୟାନ ଦେଉଛି । ତେଣୁ ସାମ୍ବାଦିକର ଚେହେରା ଦ୍ରୁତଗତିରେ ପରିବର୍ତ୍ତନ ହେଉଛି ଓ ତା'ର ସ୍ୱର ବ୍ୟବସାୟିକ ଭଳି ଶୁଭୁଛି ।

ଆଜି ରାଜନୀତିରେ ଅପରାଧୀଙ୍କ ଅନୁପ୍ରବେଶ ଓ ସାମ୍ବାଦିକତାର ଚେହେରାକୁ ବଦଳାଇ ଦେଇଛି ଓ 'ପ୍ରେସ'ର ସ୍ୱାଧୀନତାକୁ ଖୁବ୍ ବଡ଼ ଆହ୍ୱାନ ଆଣି ଦେଇଛି । ସାମ୍ବାଦିକତାର ରୂପ ଦ୍ରୁତ ଗତିରେ ବଦଳିବାରେ ଲାଗିଛି । ଅନୁବନ୍ଧିତ ସାମ୍ବାଦିକଟି ନିଜର ଚାକିରି ବଂଚାଇବାକୁ ଯାଇ ସବୁବେଳେ ଚାପରେ ରହିଥାଏ । ସମାଚାର ପତ୍ର ଜନ୍ମ ନେଲାବେଳେ ଯେଉଁ ନୀତି ଆଦର୍ଶକୁ ଆଖି ଆଗରେ ରଖାଯାଇଥାଏ, ସମୟକ୍ରମେ ସୁବିଧାବାଦର ଉତ୍ପୀଡ଼ନରେ

ତାକୁ ସାମ୍ବାଦିକଟି ଭୁଲିବାକୁ ବାଧ ହୁଏ । ମାଲିକର ହିତ ଅହିତ ଜନହିତକୁ ଆଢୁଆଳରେ ରଖୁଥିବାରୁ କିଂକର୍ତ୍ତବ୍ୟମୂଢ଼ ହୋଇ କାର୍ଯ୍ୟ କରୁଥିବା ସାମ୍ବାଦିକର ରୂପ ଏହିପରି ଭାବେ ବଳଦିବାରେ ଲାଗିଛି ।

ଆଜି କାର୍ଯ୍ୟ ପ୍ରଣାଳୀ, କାମ କରିବାର ଶୈଳୀକୁ ନେଇ ସାମ୍ବାଦିକତାର ସ୍ୱରୂପ ବଦଳି ଯାଇଛି । ଶସ୍ତା ସ୍ଲୋଗାନରେ ସମ୍ବାଦପତ୍ର ଭରପୂର ହୋଇ ସାମ୍ବାଦିକତାର ଜ୍ଞାନଗରିମାର ଡିଣ୍ଡିମ ପିଟୁଥିଲେ ହେଁ ମୌଳିକତା ତା'ର ଆବେଦନ ହରାଇଛି । ଦେଶ ଦଶର କଲ୍ୟାଣ ପାଇଁ ବଦ୍ଧପରିକର ସାମ୍ବାଦିକ ଏବେ ଧନପ୍ରାପ୍ତିର ପୁଲକରେ ଉଶୃଙ୍ଖଳ ହୋଇଯାଇଛନ୍ତି । ସାରା ବିଶ୍ୱର ଏହି ସନ୍ଧିକ୍ଷଣରେ ମଣିଷ ଜୀବନର ରାହା ଖୋଜି ପାଉ ନାହିଁ । ଯୁଦ୍ଧ, ହିଂସା, ରକ୍ତପାତ, ଆତଙ୍କବାଦ, ସାମ୍ପ୍ରଦାୟିକତା, ଜାତିଆଣ ଭାବ, ରୋଗ, ଶୋକ, କ୍ଲେଶ, ଅପମାନରେ ଚିର ଜର୍ଜରିତ ମଣିଷକୁ ଆହା କରିବାକୁ କେହି ନାହିଁ । ଜୀବନ ହଜିଯାଉଛି ଯନ୍ତ୍ରଣାର ଚୌହଦୀରେ । କ୍ଷତାକ୍ତ ମଣିଷ ହାତଛାଟି ରାହାଛାଡ଼ି କାନ୍ଦୁଛି । ଆଶ୍ୱାସନାର ହାତଟିଏ ଲମ୍ବିଯାଉ ନାହିଁ ତା' ଆଡ଼କୁ ମାନବବାଦର ଦ୍ୱାହି ଦେଇ । କେହି ନାହିଁ ନିରାଶା ହତାଶାରେ ଦୋଦୁଲ୍ୟମାନ ସେ ମରୁଛି ପ୍ରତି କ୍ଷଣ । ଏମିତି ଦୁର୍ଦ୍ଦିନରେ ପତ୍ରକାରୀତାର ରୂପ ବଦଳିଯିବା ତା' ପାଇଁ ଅଭିଶାପ ପାଲଟିଯାଇଛି ।

ଆଜିର ଏହି ପରିସ୍ଥିତିରୁ ମୁକ୍ତି ପାଇବା ସହଜ କଥା ନୁହେଁ । କିନ୍ତୁ ସାମ୍ବାଦିକତାର ନିଷ୍ଠା, ସତ୍ୟାଗ୍ରହୀତା ଏସବୁକୁ ବଦଳେଇ ଦେଇପାରେ । ଯଦି 'ପ୍ରେସ୍'ର ସ୍ୱତନ୍ତ୍ରତା ଅବ୍ୟାହତ ରହେ ଲୋକତନ୍ତ୍ରକୁ ସେ ସଠିକ୍ ମାର୍ଗ ଦର୍ଶନ ଦେଇପାରେ ଓ ଗଣତନ୍ତ୍ରକୁ ଚତୁର୍ଥ ସ୍ତମ୍ଭ ସମାଜର ମେରୁଦଣ୍ଡ ବୋଲି ପ୍ରମାଣିତ ହୁଏ । ସାମ୍ପ୍ରତିକ ପରିସ୍ଥିତି ଓ ପରିବେଶରେ ସମ୍ବାଦପତ୍ର ଓ ସାମ୍ବାଦିକମାନେ ଏସବୁ କଥାକୁ ଅତ୍ୟନ୍ତ ଗାମ୍ଭୀର୍ଯ୍ୟତାର ସହ ବିଚାର କଲେ ସାମାଜିକ ସୁସ୍ଥତା ଫେରି ଆସିବାକୁ ବେଶୀ ଡେରି ଲାଗିବ ନାହିଁ ।

ବରିଷ୍ଠ ସାମ୍ବାଦିକ



# ନୈତିକତା ଏବଂ ଗଣମାଧ୍ୟମ

ସୁଶାନ୍ତ ବେହେରା

ସମାଜର ବିଭିନ୍ନ କାର୍ଯ୍ୟରେ ନୈତିକତା ଏକ ପ୍ରମୁଖ ଅଙ୍ଗ ଭାବେ ଗଣାଯାଇଥାଏ । ତେଣୁ ଗଣମାଧ୍ୟମ ଓ ନୈତିକତା ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ଭଳି କାର୍ଯ୍ୟ କରିଥାଏ । କାରଣ ଗଣମାଧ୍ୟମ ଯଦି ଏକ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶ ମଧ୍ୟରେ ନରହେ, ତେବେ ତାହା ଗଣମାନଙ୍କର ମାଧ୍ୟମ ବୋଲି ବିବେଚନା କରି କଷ୍ଟ ହୋଇ ପଡ଼େ । ତେଣୁ ପ୍ରତ୍ୟେକ ଗଣମାଧ୍ୟମ ବା ଏହାର ପ୍ରତିନିଧିମାନେ ଏକ ନିର୍ଦ୍ଦିଷ୍ଟ ନୀତି ମଧ୍ୟରେ ରହିବା ପାଇଁ ଆମ ଦେଶରେ କେତେକ ନିୟମ ପ୍ରଣୟନ ହୋଇଛି, ଯାହା ଆମ ରାଜ୍ୟର ଗଣମାଧ୍ୟମ ପାଇଁ ମଧ୍ୟ ଲାଗୁ ହୋଇଥାଏ । ଏସବୁ ସତ୍ତ୍ୱେ ମଧ୍ୟ ଅନେକ ସମୟରେ ବିଭିନ୍ନ ପ୍ରକାରର ଗଣମାଧ୍ୟମ ନୈତିକତା ହରାଉଛି ବୋଲି ଅଭିଯୋଗ ହେଉଛି, ଯାହା କେତେକାଂଶରେ ସତ୍ୟ ବୋଲି ପରିଗଣିତ ହେଉଛି ।

ସମ୍ପ୍ରତି ସମ୍ବାଦପତ୍ର ଏକ ଶିଳ୍ପରେ ପରିଣତ ହୋଇଛି । ତେଣୁ ଯେଉଁ ବ୍ୟକ୍ତି ବା ସଂସ୍ଥା ଏହି କ୍ଷେତ୍ରରେ ପୁଞ୍ଜିନିବେଶ କରୁଛନ୍ତି, ସେମାନେ ସମ୍ବାଦପତ୍ରର ବା ଅନ୍ୟ ଗଣମାଧ୍ୟମର ମାଲିକାନା ହାସଲ କରି ପ୍ରେସ୍ ବା ଗଣମାଧ୍ୟମ ସ୍ୱାଧୀନତା ପାଇଁ ଦାବି କରୁଛନ୍ତି । ଆଉ କେତେକ ସ୍ଥଳରେ ଅନେକ ନୀତିହୀନ ଏବଂ ନିଜନିଜ କ୍ଷେତ୍ରରେ କଳଙ୍କିତ ସଂସ୍ଥା ବା ବ୍ୟକ୍ତି ସମ୍ବାଦପତ୍ର ବା ଗଣମାଧ୍ୟମର ମାଲିକାନା ହାସଲ କରି ଏହା ମାଧ୍ୟମରେ ନିଜର ବ୍ୟବସାୟ ସାମ୍ରାଜ୍ୟ ବିସ୍ତାର କରିବାରେ ଲାଗିଛନ୍ତି । ଏହି କାର୍ଯ୍ୟ କେତେଦୂର ନୀତି ଉପରେ ପର୍ଯ୍ୟବସିତ ବା ନୀତିହୀନ ତାହା ଆମେ ଏଠାରେ ଆଲୋଚନା କରୁନାହୁଁ । କାରଣ ଯାହା ଗୋଟିଏ ବ୍ୟକ୍ତି ବା ଗୋଷ୍ଠୀ ପାଇଁ ଅନୈତିକ ବା ଅପରାଧ ତାହା ହୁଏତ ଅନ୍ୟ ଏକ ଗୋଷ୍ଠୀ ବା ବ୍ୟକ୍ତି ପାଇଁ ଆଦର୍ଶ ବା ନୀତିବାନ୍ କାର୍ଯ୍ୟ ହୋଇପାରେ ।

ଆମ ରାଜ୍ୟରେ ଏବଂ ଦେଶର ଅନେକ ସ୍ଥାନରେ କେବଳ ନୀତି ଓ ଆଦର୍ଶକୁ ପାଥେୟ କରି ଅନେକ ସମ୍ବାଦପତ୍ରର ମାଲିକ ସର୍ବସ୍ୱାନ୍ତ ବା ଦେବାଳିଆ ହୋଇ ନିଜର ସଂସ୍ଥାକୁ ବନ୍ଦ କରିଦେବାକୁ ବାଧ୍ୟ ହୋଇଛନ୍ତି । ଏହା ପଛରେ ରହିଥିବା ନୀତି ଓ ଆଦର୍ଶକୁ ଛାଡ଼ି ପାରିବେ ନାହିଁ ବା ଅନୈତିକ କାର୍ଯ୍ୟ କରିବେ ନାହିଁ ବୋଲି ସେମାନଙ୍କର ଅନେକ ଅସୁବିଧା ମଧ୍ୟ ହୋଇଛି । କିନ୍ତୁ ସାମ୍ପ୍ରତିକ ସ୍ଥିତିରେ ଗଣମାଧ୍ୟମ ପାଇଁ ନୈତିକତା ଏକ ବଳିଷ୍ଠ ଅଙ୍ଗ ହୋଇ ରହିନାହିଁ । ଆଜିକାଲି ପୋଥିଗତ ବିଦ୍ୟାରେ ନୀତି ଓ ଆଦର୍ଶ କଥା କୁହାଯାଉଥିଲାବେଳେ କାର୍ଯ୍ୟ କ୍ଷେତ୍ରରେ ଏହା ଓଲଟା ହେଉଛି । କାରଣ ଆଜିର ବଜାର ସର୍ବସ୍ୱ ଦୁନିଆରେ ଯେଉଁ ବ୍ୟକ୍ତି ଭଲ ବ୍ୟବସାୟ ଦେଇ ପାରୁଛି (ଯେ କୌଣସି ବାଟରେ) ସେ ହିଁ ସଫଳ ଗଣମାଧ୍ୟମ ପ୍ରତିନିଧି ବୋଲି ପରିଗଣିତ ହେଉଛି । ସେହିଭଳି ଯେଉଁ ଗଣମାଧ୍ୟମ (ଛାପା, ବୈଦ୍ୟୁତିକ ବା ଇଣ୍ଟରନେଟ୍) ଯେତେ ଅଧିକ ବ୍ୟବସାୟିକ ସଫଳତା ହାସଲ କରୁଛି ତାହା ସେତେ ଆଦୃତ ହେଉଛି । ତେଣୁ ଏପରି ସ୍ଥିତିରେ ଗଣମାଧ୍ୟମ ପାଇଁ ନୈତିକତା କେବଳ ଏକ ସ୍ଲୋଗାନ୍ ମଧ୍ୟରେ ସୀମିତ ହୋଇ ରହିଛି । ଗଣମାଧ୍ୟମ ଓ ନୈତିକତା ବାବଦରେ ନିକଟରେ ଆସାମ ରାଜଧାନୀରେ ହୋଇଥିବା ଏକ ବହୁ ଚର୍ଚ୍ଚିତ ଘଟଣାକୁ ଉତ୍କୃଷ୍ଟ ଉଦାହରଣ ଭାବେ ନିଆଯାଇପାରେ । କାରଣ ଏହି ଉଦାହରଣରେ ଗୋଟିଏ ଯୁବତୀକୁ ଅନେକ ଲୋକଙ୍କ ଉପସ୍ଥିତିରେ ବେଶ୍ କିଛି ସମୟ ଧରି ଅସଦାଚରଣ କରାଯାଉଥିଲେ ମଧ୍ୟ କେବଳ ଚଟପଟି ଖବର ପ୍ରସାରଣ ପାଇଁ ସମସ୍ତ ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେଇ ଏକ ନିର୍ଦ୍ଦିଷ୍ଟ ଟିଭି ଚ୍ୟାନେଲ୍‌ର ପ୍ରତିନିଧି

ଏହି ଘଟଣାକୁ ନିଜ ଭିଡ଼ିଓରେ ଉତ୍ତୋଳନ କରିଚାଲିଥିଲେ । ପରେ ଏ ବାବଦରେ ବ୍ୟାପକ ଆଲୋଚନା ଓ ସମାଲୋଚନା ପରେ ସମ୍ପୃକ୍ତ ପ୍ରତିନିଧି ନିଜ ପଦବୀରୁ ଇସ୍ତଫା ଦେବାକୁ ବାଧ୍ୟ ହୋଇଥିଲେ । ସେହିପରି ଆମେରିକାର ଜଣେ ଫଟୋ ସାମ୍ବାଦିକ କିଛି ବର୍ଷ ତଳେ ଅନ୍ୟ ଏକ ଉଦାହରଣ କ୍ରମରେ ଆଫ୍ରିକୀୟ ଦେଶ ସୁଦାନର ଏକ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ଗୋଟିଏ ଜୀବନ୍ତ ଜୀର୍ଣ୍ଣ ଶିଶୁକୁ କିପରି ଗୋଟିଏ ବିରାଟକାୟ ଶାଗୁଣା ଭକ୍ଷଣ କରିବାକୁ ଆସୁଛି, ତାହାର ଚିତ୍ର ଉତ୍ତୋଳନ କରି ଏକ ପ୍ରତିଷ୍ଠିତ ପୁରସ୍କାର ପାଇଥିଲେ । ପରେ ଏ ବାବଦରେ ସତକଥା ଉନ୍ମୋଚିତ ହେବା ପରେ ସେ ନିଜର ମାନବିକତା ଭୁଲି ଏହି ଘଟଣାରେ ଶାଗୁଣାକୁ ନ ଗୋଡ଼ାଇ ଫଟୋ ନେବାରେ ବ୍ୟାକୁଳତା ପାଇଁ ତିରସ୍କୃତ ହେବା ପରେ ଆତ୍ମହତ୍ୟା କରି ନିଜର ଜୀବନ ଦେଇଥିଲେ । ଏହି ଦୁଇଟି କେବଳ ଉଦାହରଣ ମାତ୍ର । ଏହିପରି ଅନେକ ଘଟଣା ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଘଟୁଥିଲେ ମଧ୍ୟ ଅନେକ ଲୋକଲୋଚନକୁ ଆସିପାରୁ ନାହିଁ । ଯାହା ବି ଆସୁଛି ସେଗୁଡ଼ିକୁ ଲୋକ ବା ପାଠକ ବା ଦର୍ଶକ ଭଲ ପାଉଛନ୍ତି ବୋଲି ତାହା କାରାଯାଉଛି ବୋଲି ଗଣମାଧ୍ୟମ ପକ୍ଷରୁ ସଫେଇ ଦିଆଯାଉଛି ।

ଉପରୋକ୍ତ ସମସ୍ତ ଘଟଣା କ୍ରମରେ ଗଣମାଧ୍ୟମରେ ନୈତିକତା ଦିନକୁ ଦିନ କମିବାରେ ଲାଗିଛି ବୋଲି ହୃଦ୍‌ବୋଧ ହେଉଥିଲେ ମଧ୍ୟ ଏ ବାବଦରେ ସମସ୍ତେ ଜାଣି ନ ଜାଣିଲା ଭଳି ସ୍ଥିତିରେ ଅଛନ୍ତି । ଗଣମାଧ୍ୟମ ପାଇଁ ଏକ ନିର୍ଦ୍ଦିଷ୍ଟ ନୀତି ନିୟମ ବା ନୈତିକତାର ଆଧାର ରହିଛି ଏବଂ ଏହାର ସଠିକ ପାଳନ ହେଉଛି କି ନାହିଁ ସେ ବାବଦରେ ତଦାରଖ କରିବା ପାଇଁ ଅନୁଷ୍ଠାନ ବା ସଂସ୍ଥା ମଧ୍ୟ ରହିଛି । ଏହା ସତ୍ତ୍ୱେ ମଧ୍ୟ ଭାରତ ପରି ଏକ ଉଦାର, ସଂସ୍କୃତି ଓ କଳା ସମ୍ପନ୍ନ ଦେଶରେ ଗଣମାଧ୍ୟମଗୁଡ଼ିକରେ ନୈତିକତା ଏବେ ରସାତଳଗାମୀ ସ୍ଥିତିରେ ପହଞ୍ଚିଛି । ଏ ବାବଦରେ ସାଧାରଣଲୋକଙ୍କ ସମେତ ବୁଦ୍ଧିଜୀବୀ, ରାଜନେତାଙ୍କ ସମେତ ଗଣମାଧ୍ୟମର ମାଲିକମାନେ ଆବଶ୍ୟକ ଚିନ୍ତା କରି ପଦକ୍ଷେପ ନେବାର ସମୟ ଆସିଛି ।

ଘର ନଂ-ବିଏଲ୍-୨୨୪
ବାସନ୍ତୀ କଲୋନୀ, ରାଉରକେଲା-୭୬୯୦୧୨



# ଗଣମାଧ୍ୟମ ଓ ବିକାଶ

ମନୋଜ ବାରିକ

ଗଣତନ୍ତ୍ରର ଚତୁର୍ଥସ୍ତମ୍ଭ ହେଉଛି ଗଣମାଧ୍ୟମ । ଗଣମାଧ୍ୟମର ଆକାର ଓ ପ୍ରକାର ଯୁଗ ପରେ ଯୁଗ, ସମୟ ପରେ ସମୟ ମଧ୍ୟରେ ପରିପ୍ରକାଶ ହୋଇଛି । ଗଣମାଧ୍ୟମର ଯୁଗ ଏବେକାର ନୁହେଁ ବରଂ ଆଦିମ ଯୁଗରୁ ଆରମ୍ଭ ହୋଇଛି । ଯେତେବେଳେ ସୃଷ୍ଟି ଆରମ୍ଭ ହେଲା, ସେତେବେଳେ ମଧ୍ୟ ଗଣମାଧ୍ୟମର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ପୁରାଣ ଯୁଗରେ ଦେବର୍ଷି ନାରଦ ସମ୍ବାଦଦାତାର ଭୂମିକା ତୁଲାଉଥିଲେ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ, ଗୋଟିଏ ମୁହଁରୁ ଆଉ ଗୋଟିଏ ମୁହଁକୁ ଖବର ଦେବର୍ଷି ନାରଦ ହିଁ ଖବର ପରିବେଷଣ କରୁଥିଲେ । ପରବର୍ତ୍ତୀ ସମୟରେ ଏହା ସୃଷ୍ଟିର ମାନବ ସମାଜ ମଧ୍ୟରେ ପ୍ରଚଳିତ ହେଲା । ମଣିଷ ସଭ୍ୟତା ଯେତେବେଳେ ଆରମ୍ଭ ହେଲା ସେ ମଧ୍ୟ ସମ୍ବାଦ ପରିବେଷଣକୁ ବିଶେଷ ଗୁରୁତ୍ୱ ଦେବା ଆରମ୍ଭ କଲା । ସମ୍ବାଦ ବା ଯୋଗାଯୋଗ ବିନା କୌଣସି କାମ କରିବା କିମ୍ବା ତଥ୍ୟ ହାସଲ କରିବା ଅସମ୍ଭବ ହୋଇପଡ଼ିଲା । ତେବେ ଖବର ପଠାଇବା ବା ଖବର ସଂଗ୍ରହ କରିବାର ପଦ୍ଧତିର ପ୍ରଣାଳୀରେ ଧୀରେ ଧୀରେ କ୍ରମବିକାଶ ହୋଇଛି । ରାଜା ରାଜୁଡ଼ା ସମୟରେ ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଖବର ପଠାଇବାର ମାଧ୍ୟମ ଥିଲା ଘୋଡ଼ା, ପାରା ଏବଂ ଦୂତ । ରାଜାମାନେ ନିଜର ଦୂତ ସାହାଯ୍ୟରେ ତାଳପତ୍ରରେ କୌଣସି ବାର୍ତ୍ତା ଲେଖି ଅନ୍ୟ ରାଜ୍ୟକୁ ପଠାଉଥିଲେ । ତେବେ ତାହା ସମୟ ସାପେକ୍ଷ ଥିଲା । ଏପରିକି ଦୁଇ ବା ତିନି ଦିନ ଲାଗିଯାଉଥିଲା । ପୁଣି ତାହାର ବିକଳ୍ପ ଭାବେ ପାରାକୁ ବ୍ୟବହାର କରାଗଲା । ପାରାର ବ୍ୟବହାର ଦ୍ୱାରା ସମ୍ବାଦ ପାଇବା ଟିକିଏ ସହଜ ହେଲା ଏବଂ ଅନ୍ୟ ବିପଦଠାରୁ ମଧ୍ୟ ସୁରକ୍ଷିତ ଭାବରେ ସମ୍ବାଦ ପହଞ୍ଚି ପାରିଲା, ତେବେ ମଣିଷ ସମାଜ ଏହାକୁ ଉନ୍ନତ କରିବା ପାଇଁ ଆହୁରି ନିଜର ବୁଦ୍ଧି, ଜ୍ଞାନର ପ୍ରୟୋଗ କଲା ଏବଂ ସେଥିରେ ମଧ୍ୟ ସଫଳ ହେଲା । ଧୀରେ ଧୀରେ ସମ୍ବାଦ ପାଇବା ପାଇଁ ମଣିଷ ମନରେ ଯେତେ ବ୍ୟାକୁଳତା ବଢ଼ିଲା, ତାହାର ବିକାଶ ଦିଗରେ ମଧ୍ୟ ସେତିକି ଦୃଷ୍ଟି ଦିଆଗଲା । ପ୍ରାଥମିକ ସ୍ତରରେ କୌଣସି ଏକ ଅଞ୍ଚଳର ଖବରକୁ ଏକାଠି କରି/ସଂଗ୍ରହ କରି ସୀସା କାଳିରେ ତାହାକୁ ଲେଖାଯାଇ ବଣ୍ଟନ କରାଗଲା । ଏହା ବହୁତ କଷ୍ଟଦାୟକ ଥିବାବେଳେ ସବୁବେଳେ ମଧ୍ୟ ସମ୍ଭବ ନ ଥିଲା । ପ୍ରାକ୍ ୧୯୩୬ ମସିହାରେ ବହୁ ବାଧାବିଘ୍ନ ଓ କଷ୍ଟ ସହ୍ୟ କରି ଜାତିପ୍ରେମୀମାନେ ପତ୍ରପତ୍ରିକା ଓ ଖବରକାଗଜ ଆଦିର ବିକାଶ କରିଥିଲେ । ତେବେ ଏଥିରେ ଭୂମିକା ଥିଲା ପତ୍ରପତ୍ରିକାର ଲଗାତାର ପ୍ରକାଶନ ଏବଂ ସେଥିରେ ଜାତୀୟତାର ବାର୍ତ୍ତାକୁ ଗୁରୁତ୍ୱ ଦେବା । ଏହାଦ୍ୱାରା ଓଡ଼ିଆ ଜାତି ନିଜକୁ ବେଶ୍ ପ୍ରତିଷ୍ଠା କରିପାରିଲା । ଶତାବ୍ଦୀ ଶତାବ୍ଦୀ ଧରି ନିଜର କଥାକୁ, ନିଜର ଭାଷାକୁ ନିଜର ପତ୍ରିକା, କାଗଜ ଓ ହାତଲେଖା ଦେଖି ଅତି ଆନନ୍ଦିତ ହୋଇଉଠିଲା । ୧୮୩୦ ମସିହାରୁ ହିଁ ଓଡ଼ିଆ ଭାଷାଭାଷୀ ଲୋକଙ୍କ କଥା କହିବାକୁ ଉଦ୍ୟମ ଆରମ୍ଭ କରାଗଲା । ତେବେ ଏଠାରେ କହିବାକୁ ଗଲେ ୧୯୮୦ ପରଠାରୁ ଆମ ଓଡ଼ିଶାରେ ଗଣମାଧ୍ୟମର ବିକାଶ ଅତି ମାତ୍ରାରେ ବଢ଼ିଚାଲିଲା । ମୁଦ୍ରଣ ଶିଳ୍ପର ବିକାଶ, ବିଶେଷ କରି ୯୦ ଦଶକର ଶେଷ ଆଡ଼କୁ କମ୍ପ୍ୟୁଟର ପ୍ରିଣ୍ଟିଂର କ୍ରମାଗତ ପ୍ରସାର ଯୋଗୁଁ ପତ୍ରପତ୍ରିକାଗୁଡ଼ିକ ବିନା ଦ୍ୱିଧାରେ ପ୍ରକାଶିତ ହୋଇପାରିଛି । ଧୀରେ ଧୀରେ ପ୍ରିଣ୍ଟିଂ ମାଧ୍ୟମରୁ ଗଣମାଧ୍ୟମ ବିକଶିତ ହେଲା ବୈଦ୍ୟୁତିକ ମାଧ୍ୟମକୁ । ସବୁ ସ୍ଥାନରେ ଖବରକାଗଜ ପହଞ୍ଚାଇବା ଏବଂ ସେଠାରୁ ଖବର ସଂଗ୍ରହ କରିବା ଗୋଟିଏ ସମୟରେ ଦୁରୁହ ବ୍ୟାପାର ଥିଲା ।

ତେବେ ଏହାର ଅତି ସହଜ ରାସ୍ତା ମଧ୍ୟ ତିଆରି କରାଗଲା । କୌଣସି ଅଞ୍ଚଳର ଯୋଗାଯୋଗର ବ୍ୟବସ୍ଥା ଯେତେ ସମୃଦ୍ଧ ସେ ଅଞ୍ଚଳର ଉନ୍ନତି ମଧ୍ୟ ସେତିକି ସମୃଦ୍ଧ । ତେଣୁ ଯେତେବେଳେ ରାଜ୍ୟର ସମସ୍ତ ଅଞ୍ଚଳ ଉନ୍ନତି ପଥରେ ଆଗେଇଲା ସେତିକିବେଳେ ଗଣମାଧ୍ୟମ ମଧ୍ୟ ସେତେ ଆଗେଇବା ଆରମ୍ଭ କଲା । ଆଜି ଓଡ଼ିଶା ରାଜ୍ୟରେ ଖବରକାଗଜ ସଂଖ୍ୟା ବଢ଼ିବାରେ ଲାଗିଛି । ପତ୍ରପତ୍ରିକାର ସଂଖ୍ୟା ଏବଂ ବୈଦ୍ୟୁତିକ ଗଣମାଧ୍ୟମର ସଂଖ୍ୟା ମଧ୍ୟ ଆଶାଜନକ ଭାବେ ବଢ଼ିବାରେ ଲାଗିଛି । ଗଣମାଧ୍ୟମ ଆଜି ଏକ ମୁଖ୍ୟ ପ୍ରସଙ୍ଗ ଭାବରେ ସମସ୍ତଙ୍କ ପାଖରେ ଉଭା ହୋଇଛି । ସରକାରୀ ସ୍ତରରେ ଯେତିକି ପଦକ୍ଷେପ ନିଆଯାଇଛି, ବେସରକାରୀ ସ୍ତରରେ ମଧ୍ୟ ସେତିକି ପଦକ୍ଷେପ ନିଆଚାଲିଛି ଏକ ସୁସ୍ଥ ଖବର ପରିବେଷଣ ପାଇଁ । ଦେଶ ହେଉ ବା ରାଜ୍ୟ ହେଉ ସବୁକ୍ଷେତ୍ରରେ ବିକାଶ ପାଇଁ ଗଣମାଧ୍ୟମ ହିଁ ମୁଖ୍ୟ ଅସ୍ତ୍ର । ଆଜି ସମଗ୍ର ବିଶ୍ୱରେ ଏପରି କିଛି ଘଟଣା ନାହିଁ ଯେଉଁଥିରେ ଗଣମାଧ୍ୟମର ଭୂମିକା ନ ଥିବ । ଘରର ଚୁଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ସବୁର ଟିକ୍‌ନିଖ୍ ଖବରକୁ ସଠିକ୍ ଭାବରେ ପହଞ୍ଚାଇବାର ଦାୟିତ୍ୱ ଆଜି ଗଣମାଧ୍ୟମ ହିଁ ନେଇଛି । ତେବେ ଶେଷରେ ଏତିକି କୁହାଯାଇପାରେ, ବିକାଶ କ୍ଷେତ୍ରରେ ପ୍ରମୁଖ ଭୂମିକା ଗଣମାଧ୍ୟମ ହିଁ ନେଇପାରିବ ।

ଭୁବନେଶ୍ୱର



# ସାମ୍ପ୍ରତିକ ପରିସ୍ଥିତିରେ ଓଡ଼ିଶାର ଗଣମାଧ୍ୟମ

ମହେନ୍ଦ୍ର କୁମାର ମିଶ୍ର

ସାମ୍ପ୍ରତିକ ପରିସ୍ଥିତିରେ ଓଡ଼ିଶାର ଗଣମାଧ୍ୟମ ଏକ ନୂତନ ଧାରାରେ ଧାବମାନ ହେଉଛି । କାରଣ ସମଗ୍ର ବିଶ୍ୱର ବିଭିନ୍ନ ବିକଶିତ ଦେଶରେ ଦିନକୁ ଦିନ ଛାପା ବା ମୁଦ୍ରିତ ଗଣମାଧ୍ୟମର ପ୍ରସାରଣ କମି କମି ଯାଉଥିବାବେଳେ ଓଡ଼ିଶାରେ ଏହି ପ୍ରକାରର ଗଣମାଧ୍ୟମର ପ୍ରସାରଣ ବୃଦ୍ଧି ପାଇବାରେ ଲାଗିଛି । ସେହିପରି ସମଗ୍ର ଦେଶରେ ଏବେ ଜାତୀୟ ସ୍ତରର ବୈଦ୍ୟୁତିକ ଗଣମାଧ୍ୟମଗୁଡ଼ିକ ମଧ୍ୟରୁ ଅନେକ ବ୍ୟବସାୟିକ କ୍ଷତିରେ ଚାଲୁଥିବାବେଳେ ଦିନକୁ ଦିନ ଓଡ଼ିଆ ବୈଦ୍ୟୁତିକ ଗଣମାଧ୍ୟମର ସଂଖ୍ୟା ଆଶାଜନକ ଭାବେ ବଢ଼ିଛି । ଅନ୍ୟ ପକ୍ଷରେ ଜାତୀୟ ସ୍ତରରେ ଇଣ୍ଟରନେଟ୍ ଭିତ୍ତିକ ଗଣମାଧ୍ୟମଗୁଡ଼ିକ ସହିତ ତାଳ ଦେଇ ଓଡ଼ିଶାରେ ଓଡ଼ିଆ ଏବଂ ଇଂରାଜୀ ଭାଷାରେ ଇଣ୍ଟରନେଟ୍ ଭିତ୍ତିକ ଗଣମାଧ୍ୟମ ସଂଖ୍ୟା ବୃଦ୍ଧି ପାଇଛି । ତେଣୁ ମୋଟାମୋଟି ଭାବେ ଦେଖିବାକୁ ଗଲେ ବିଗତ ବର୍ଷଗୁଡ଼ିକ ତୁଳନାରେ ବିଶେଷ କରି ୨୦୧୦ ମସିହା ପରଠାରୁ ବିଭିନ୍ନ ଓଡ଼ିଆ ବା ଓଡ଼ିଶାରେ ସ୍ଥିତି ଗଣମାଧ୍ୟମ ଏକ ନୂତନ ଧାରା ମଧ୍ୟ ଦେଇ ପରିଚାଳିତ ହେଉଛି ।

ସାମ୍ପ୍ରତିକ ସ୍ଥିତିରେ ଛାପା ବା ମୁଦ୍ରିତ ଗଣମାଧ୍ୟମ

ସ୍ୱାଧୀନତା ପରବର୍ତ୍ତୀ ସମୟର ଓଡ଼ିଶାରେ ହାତଗଣତି ଦୈନିକ ଖବର କାଗଜ ପ୍ରକାଶ ପାଉଥିଲା । ପ୍ରାୟ ଅଶୀ ଦଶକ ପର୍ଯ୍ୟନ୍ତ ଏହି ଧାରାରେ ବିଶେଷ କିଛି ଆଖି ଦୃଶିଆ ପରିବର୍ତ୍ତନ ହୋଇ ନ ଥିଲା । ଯଦିଓ ୭୦ ଦଶକରେ ଏକାଧିକ ଦୈନିକ ସମ୍ବାଦପତ୍ର ଆତ୍ମ ପ୍ରକାଶ କରିଥିଲା, ସେମାନଙ୍କ ମଧ୍ୟରୁ ସମ୍ପ୍ରତି କେବଳ ଓଡ଼ିଆ ଦୈନିକ ସମ୍ବାଦପତ୍ର ଆଖିଦୃଶିଆ ସଫଳତା ପାଇଛି । ଏକବିଂଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ଦୈନିକ ଓଡ଼ିଆ ସମ୍ବାଦପତ୍ର କ୍ଷେତ୍ରରେ ହାତଗଣତି ସମ୍ବାଦପତ୍ରଙ୍କ ଏକଚାଟିଆ ଆଧିପତ୍ୟ ଏବେ ଅନେକ ମାତ୍ରାରେ କମିଛି । କାରଣ ଗତ ଦୁଇ/ତିନିବର୍ଷ ମଧ୍ୟରେ ଆତ୍ମପ୍ରକାଶ କରିଥିବା ଖବର କାଗଜଗୁଡ଼ିକ ପାଠକମାନଙ୍କ ପାଇଁ ନୂତନ ଢାଞ୍ଚାରେ ସୂଚନା ଓ ତଥ୍ୟ ପ୍ରଦାନ କରିବା ପାଇଁ ଉଦ୍ୟମ କରିଥିଲାବେଳେ ଅନେକ କ୍ଷେତ୍ରରେ ପାଠକ ଏହାକୁ ପସନ୍ଦ ମଧ୍ୟ କରିଛନ୍ତି । ଏହା ବ୍ୟତୀତ ଅଳ୍ପ କେଇ ବର୍ଷ ତଳେ ଯେଉଁ ସମ୍ବାଦପତ୍ର ପାଠକମାନେ ପାରମ୍ପରିକ ଓ ଗତାନୁଗତିକ ଢାଞ୍ଚାରେ ପ୍ରକାଶିତ ସମ୍ବାଦପତ୍ରର କଳେବର ଏବଂ ସମ୍ବାଦ ପରିବେଷଣ ବାବଦରେ କିଛି ପରିବର୍ତ୍ତନ ଚାହୁଁଥିଲେ, ତାହା ଅନେକ ସ୍ଥଳରେ ସଫଳ ଭାବେ ପରିବର୍ତ୍ତିତ ହୋଇଛି । ଏହା ବ୍ୟତୀତ ଓଡ଼ିଶାରୁ ଏକାଧିକ ଅଣ ଓଡ଼ିଆ ଦୈନିକ ସମ୍ବାଦପତ୍ର ଆତ୍ମପ୍ରକାଶ କରିଛି ଯାହା ମଧ୍ୟରେ ଇଂରାଜୀ ଓ ହିନ୍ଦୀ ଅନ୍ୟତମ । ସେହିପରି ନିକଟରେ ଓଡ଼ିଶାରୁ ''ଆଖବର୍‌ନାମା' ନାମକ ଏକ ଉର୍ଦ୍ଦୁ ଦୈନିକ ଖବରକାଗଜ ଆତ୍ମ ପ୍ରକାଶ କରି ଉର୍ଦ୍ଦୁ ଭାଷାର ପାଠକମାନଙ୍କୁ କିଛି ମାତ୍ରାରେ ଆକୃଷ୍ଟ କରି ପାରିଛି । ସମ୍ପ୍ରତି ଆମ ରାଜ୍ୟରେ ଓଡ଼ିଆ ଦୈନିକ ଖବର କାଗଜ ଏବଂ ଅଣ ଓଡ଼ିଆ ଦୈନିକ ଖବର କାଗଜ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦିତା ଆରମ୍ଭ ହୋଇଛି ଯାହା ଗଣମାଧ୍ୟମ ପାଇଁ ଏକ ଭଲ ସୂଚନା ।

ବୈଦ୍ୟୁତିକ ଗଣମାଧ୍ୟମ

ମାତ୍ର କିଛି ବର୍ଷ ତଳେ ଏକମାତ୍ର ସରକାରୀ ଓଡ଼ିଆ ଦୂରଦର୍ଶନ ଚ୍ୟାନେଲ୍ ଓଡ଼ିଆ ବୈଦ୍ୟୁତିକ ଗଣମାଧ୍ୟମ ଭାବେ ଦର୍ଶକଙ୍କ ପାଇଁ ବିକଳ୍ପ ଥିଲା । ପରବର୍ତ୍ତୀ ସମୟରେ ଗୋଟିଏ ମାତ୍ର ଘରୋଇ ଓଡ଼ିଆ ବୈଦ୍ୟୁତିକ ଗଣମାଧ୍ୟମ ଓଟିଭି ଆତ୍ମପ୍ରକାଶ କରିଥିଲାବେଳେ ପରେ ପରେ ଇ-ଟିଭି ଏବଂ ମାତ୍ର କେଇ ବର୍ଷ ତଳେ କନକ ଟିଭି. ନକ୍ଷତ୍ର ଟିଭି. କାମୟାବ୍ ଟିଭି, ସାର୍ଥକ ଟିଭି. ଏମ୍‌ବିସି ଟିଭି, ପ୍ରାର୍ଥନା ଚ୍ୟାନେଲ୍, ତରଙ୍ଗ, ତରଙ୍ଗ ମ୍ୟୁଜିକ୍, ଲକ୍ଷ୍ୟ ଟିଭି, ଏସ୍ ଟିଭି ଆଦି ଏକାଧିକ ଓଡ଼ିଆ ଟିଭି ଚ୍ୟାନେଲ୍

ଆରମ୍ଭ ହୋଇଛି । ଏହାଦ୍ୱାରା ଓଡ଼ିଆ ଦର୍ଶକମାନେ ଏକାସାଙ୍ଗରେ ୨୪ ଘଣ୍ଟିଆ ଖବର ଚ୍ୟାନେଲ୍ ସହିତ, ମନୋରଞ୍ଜନ, ଆଧାତ୍ମିକ ଆଦି ବିଷୟରେ ଜାଣିବା ଓ ଦେଖିବାର ସୁଯୋଗ ପାଇଛନ୍ତି । ଏହା ଫଳରେ ଯେଉଁ ଓଡ଼ିଆ ଦର୍ଶକ ଅଣଓଡ଼ିଆ ଚ୍ୟାନେଲ୍ ଦେଖିବା ପାଇଁ ବାଧ୍ୟ ହେଉଥିଲେ, ସେହି ସ୍ଥିତିରେ ବ୍ୟାପକ ପରିବର୍ତ୍ତନ ଆସିଛି । ଆମେ ଏଠାରେ କୌଣସି ଚ୍ୟାନେଲ୍‌ର ଗୁଣାତ୍ମକ ମୂଲ୍ୟ ବା ନୈତିକତା ଉପରେ ଆଲୋଚନା କରିବା ପାଇଁ ଆବଶ୍ୟକ ମନେ ନ କରି ଏ ବାବଦରେ ଦର୍ଶକଙ୍କୁ ସେମାନଙ୍କ ପସନ୍ଦ ଉପରେ ଚିନ୍ତା କରିବା ପାଇଁ ଛାଡ଼ି ଦେଉଛୁ ।

ଇଣ୍ଟରନେଟ୍ ଗଣମାଧ୍ୟମ

ସାମ୍ପ୍ରତିକ ସ୍ଥିତିରେ ଛାପା ବା ମୁଦ୍ରିତ ଗଣମାଧ୍ୟମ, ବୈଦ୍ୟୁତିକ ଗଣମାଧ୍ୟମକୁ ବାଦ ଦେଲେ ଅନ୍ୟ ଏକ ପ୍ରମୁଖ ଗଣମାଧ୍ୟମ ଭାବେ ଇଣ୍ଟରନେଟ୍ ମାଧ୍ୟମ ଉଭା ହୋଇଛି । କାରଣ ଆଜିର ଯୁବ ପିଢ଼ି ଉପରୋକ୍ତ ତିନୋଟି ଗଣମାଧ୍ୟମ ମଧ୍ୟରୁ ଇଣ୍ଟରନେଟ୍ ମାଧ୍ୟମ ଉପରେ ଅଧିକ ନିର୍ଭରଶୀଳ ହେବା ସହିତ ଏହାକୁ ଅଧିକ ଗୁରୁତ୍ୱ ଦେଉଛନ୍ତି । ଯାହାର ଫଳସ୍ୱରୂପ ଆମ ରାଜ୍ୟରେ ଥିବା ଏକାଧିକ ମୁଦ୍ରିତ ଗଣମାଧ୍ୟମ ସମେତ ବୈଦ୍ୟୁତିକ ଗଣମାଧ୍ୟମ ସେମାନଙ୍କର ଇଣ୍ଟରନେଟ୍ ସଂସ୍କରଣ ପ୍ରକାଶ କରୁଛନ୍ତି ବା ସେଗୁଡ଼ିକର ପ୍ରଚାର ଓ ପ୍ରସାର ପାଇଁ ଇଣ୍ଟରନେଟ୍ ଉପରେ ନିର୍ଭର କରୁଛନ୍ତି । ସେହିପରି ଓଡ଼ିଆ ସମେତ ଇଂରାଜୀ ଭାଷାରେ ମଧ୍ୟ ଏକାଧିକ ପୋର୍ଟାଲ୍ ଆମ ରାଜ୍ୟରେ ଆରମ୍ଭ ହୋଇଛି । ଏହି ପୋର୍ଟାଲ୍‌ଗୁଡ଼ିକ ସମ୍ବାଦ ସହିତ ବିଭିନ୍ନ ଅନ୍ୟ ବିଷୟ ଉପରେ ଉପାଦେୟ ଏବଂ ଆବଶ୍ୟକ ସୂଚନା ପ୍ରଦାନ କରୁଛନ୍ତି । ଏକ ହିସାବ ମୁତାବକ ଆସନ୍ତା ୨୦୧୫ ସୁଦ୍ଧା ଆମ ରାଜ୍ୟରେ ସବୁଠାରୁ ଅଧିକ ଅଭିବୃଦ୍ଧି ହେବାକୁ ଥିବା ଗଣମାଧ୍ୟମ ମଧ୍ୟରେ ଇଣ୍ଟରନେଟ୍ ମାଧ୍ୟମ ପ୍ରଥମ ହେବ ବୋଲି ମଧ୍ୟ ଆକଳନ କରାଯାଇଛି । ତେଣୁ ଛାପା ବା ମୁଦ୍ରିତ ଗଣମାଧ୍ୟମ ଓ ବୈଦ୍ୟୁତିକ ଗଣମାଧ୍ୟମକୁ ବାଦ ଦେଇ ଆସନ୍ତା ଦିନଗୁଡ଼ିକରେ ଇଣ୍ଟରନେଟ୍ ମାଧ୍ୟମ ଏକ ବଳିଷ୍ଠ ମାଧ୍ୟମ ଭାବେ ପରିଗଣିତ ହେବ ଏହା ନିଃସନ୍ଦେହ ।

ତେଣୁ ମୋଟାମୋଟି ଭାବେ ଦେଖିବାକୁ ଗଲେ ସମୟ, ରୁଚି, ଅବସ୍ଥା, ଆବଶ୍ୟକତା ଆଦିକୁ ଦୃଷ୍ଟିରେ ରଖି ଓଡ଼ିଶାର ଗଣମାଧ୍ୟମରେ ମଧ୍ୟ ପରିବର୍ତ୍ତନ ହେବାରେ ଲାଗିଛି । ଯେଉଁ ଦେଶ ବା ରାଜ୍ୟ ବା ଭାଷାରେ ବିଭିନ୍ନ ପ୍ରକାରର ଗଣମାଧ୍ୟମ ଯେତେ ସୁଦୃଢ଼ ସେ ଭାଷା ବା ସେ ରାଜ୍ୟ ଓ ଦେଶ ସେତେ ଉନ୍ନତ ବା ବିକଶିତ ବୋଲି ଗଣାଯାଏ । ଏହି କ୍ରମରେ ଓଡ଼ିଶାର ଗଣମାଧ୍ୟମର ସାମ୍ପ୍ରତିକ ସ୍ଥିତି ବେଶ୍ ଉନ୍ନତ ଓ ସମୟ ତଥା ବିଶ୍ୱାୟନ ଓ ଜଗତୀକରଣ ପ୍ରକ୍ରିୟା ସହିତ ତାଳ ଦେଇ ସମପରିମାଣରେ ପରିବର୍ତ୍ତନଶୀଳ ହୋଇଛି । ଏହି ଧାରା ଜାରି ରହିଲେ ଓଡ଼ିଶାର ଗଣମାଧ୍ୟମ ଅଧିକ ସମୃଦ୍ଧ ଓ ସୁଦୃଢ଼ ହେବ ବୋଲି ଆଶା କରାଯାଇପାରେ ।

---

ପ୍ରତିନିଧି, 'ସୂର୍ଯ୍ୟପ୍ରଭା' ଏବଂ ମୁଖ୍ୟ ସଂଯୋଜକ
ଏ-୧୩୬, ସେକ୍ଟର-୧୫,
ରାଉରକେଲା-୭୬୯୦୦୩



# ଗଣମାଧ୍ୟମ ଓ ସାଧାରଣ ମଣିଷ

ମଞ୍ଜୁ ଦାସ

ଭକ୍ତଚରଣ ଦାସଙ୍କ ଭଳି ଜଣେ ବିଶିଷ୍ଟ କବିଙ୍କ ରଚନାବଳୀରୁ 'ମଥୁରା ମଙ୍ଗଳ' କାବ୍ୟ ଅନ୍ୟତମ । ଏଥିରୁ 'କଂସର ଚିଟାଉ'ରୁ ଉଦ୍ଧୃତ 'ଚିଟାଉ' ଶବ୍ଦଟି ଯେ ଗଣମାଧ୍ୟମର ସର୍ବପ୍ରଥମ ଆବିଷ୍କାର ଏକଥାକୁ ବୋଧହୁଏ କେହି ଅସ୍ୱୀକାର କରିପାରିବେ ନାହିଁ । ଏହିପରି ଆମ ପୁରାଣ ପୃଷ୍ଠାକୁ ଓଲଟାଇଲେ ଅନେକ ଉଦାହରଣ ଆମେ ଦେଖିବାକୁ ପାଇବା । ସେସମୟରେ ଦୂତଙ୍କ ଜରିଆରେ 'ଚିଟାଉ' ଲେଖି ସମ୍ବାଦ ପ୍ରେରଣ କରାଯାଉଥିଲା । ଏତ ଗଲା ପୁରାଣ ଯୁଗର କଥା । କ୍ରମଶଃ ସମ୍ବାଦ ପ୍ରେରଣର ଶୈଳୀ କିପରି ପରିବର୍ତ୍ତିତ ହେଲା ତାହା ଆସନ୍ତୁ ଜାଣିବା ।

ସିନ୍ଧୁ ସଭ୍ୟତା ଗଢ଼ି ଉଠିବା ପରେ ମନୁଷ୍ୟ ନଦୀକୂଳରେ ବାସ କଲା । ଜଙ୍ଗଲର ଫଳମୂଳ ଆହାର କଲା ଏବଂ ପଶୁଙ୍କ ଭଳି କଞ୍ଚାମାଂସ ଭକ୍ଷଣ କଲା । କଥାବାର୍ତ୍ତା କରିବା କ'ଣ ଜାଣି ନ ଥିବାରୁ ଠାର ମାଧ୍ୟମରେ ସେ ତା'ର ମନୋଭାବକୁ ଅନ୍ୟ ନିକଟରେ ପରିପ୍ରକାଶ କରୁଥିଲା । ଏତଦ୍‌ବ୍ୟତୀତ ଚିତ୍ରକଳା ମାଧ୍ୟମରେ ସେ କିଛି ସମ୍ବାଦ ଅନ୍ୟମାନଙ୍କୁ ଜ୍ଞାତ କରାଇବାରେ ସକ୍ଷମ ହେଲା । ଏହିପରି ଭାବରେ ଜଣଙ୍କଠାରୁ ଅନ୍ୟଜଣକ ନିକଟକୁ ସମ୍ବାଦମାନ ପ୍ରସାରିତ ହେବାରେ ଲାଗିଲା ।

ପରବର୍ତ୍ତୀ ସମୟରେ ଡେଙ୍ଗୁରା ସାହାଯ୍ୟରେ ସମ୍ବାଦ ପ୍ରେରଣ କରାଗଲା । ମନୁଷ୍ୟ ସଭ୍ୟତାର ପ୍ରଥମ ପାହାଚରେ ହସ୍ତଲିଖିତ ଜରୁରୀ ସମ୍ବାଦ ପାରାମାନଙ୍କ ଗୋଡ଼ରେ ବାନ୍ଧି ଅନେକ ଦୂରକୁ ପ୍ରସାରଣ କରିବାରେ ଅନେକେ ସକ୍ଷମ ହେଲେ । ତେଣୁ ସମ୍ବାଦକୁ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଏବଂ ଜଣେ ବ୍ୟକ୍ତିଠାରୁ ଅନ୍ୟମାନଙ୍କ ନିକଟରେ ପହଞ୍ଚାଇବା ପାଇଁ ବିଭିନ୍ନ ଶୈଳୀକୁ କାର୍ଯ୍ୟକାରୀ କରାଗଲା ।

ବର୍ତ୍ତମାନ ଯୁଗ ବଦଳି ଯାଇଛି । ବିଜ୍ଞାନର ଅଗ୍ରଗତି ଫଳରେ ଗଣମାଧ୍ୟମର ସ୍ୱରୂପ ବ୍ୟାପକ ହେବାରେ ଲାଗିଛି । ଦିନେ ଆକାଶବାଣୀ ଓ ସମ୍ବାଦପତ୍ର ଏ ଦିଗରେ ବେଶ ସଫଳତା ହାସଲ କରି ଲୋକଙ୍କ ନିକଟରେ ପ୍ରିୟଭାଜନ ହୋଇପାରିଥିଲା । ମାତ୍ର ବର୍ତ୍ତମାନ କେବଳ ସମ୍ବାଦପତ୍ର କାହିଁକି ବିଭିନ୍ନ ପ୍ରକାର ମୁଦ୍ରିତ ପୁସ୍ତକ ଏବଂ ପତ୍ରପତ୍ରିକା ଏହାର ସ୍ଥାନ ଦଖଲ କରି ଲୋକଙ୍କ ନିକଟରେ ସମ୍ବାଦ ପହଞ୍ଚାଇବାର ପଥ ସୁଗମ କରିଛି । ସମ୍ବାଦପତ୍ରର ପ୍ରଥମ ଉତ୍ପତ୍ତିସ୍ଥଳ ହେଉଛି ଚୀନ ଦେଶ ଏବଂ ଏହାର ଚାରିଶହ ବର୍ଷ ପରେ ଇଟାଲୀର ଭେନିସ୍ ନଗରୀରେ ଏହା ଆତ୍ମପ୍ରକାଶ କରିଥିଲା । ତେଣୁ ସମ୍ବାଦପତ୍ର ଯେ ସମ୍ବାଦ ପରିବେଷଣ ପାଇଁ ଏକ ଉତ୍କୃଷ୍ଟ ମାଧ୍ୟମ ତାହାକୁ ସମସ୍ତେ ପ୍ରାୟ ସ୍ୱୀକାର କରିବେ । ଅବଶ୍ୟ ଏହାଠାରୁ ଅଧିକ ଶକ୍ତିଶାଳୀ ଏବଂ ବ୍ୟୟବହୁଳ ଗଣମାଧ୍ୟମ ରହିଛି । ତଥାପି ସମସ୍ତେ ସବୁବେଳେ ଓ ସର୍ବତ୍ର ଯେ ତାହାକୁ ଉପଯୋଗ କରିପାରିବେ, ତାହା ହୁଏତ ସମ୍ଭବପର ନୁହେଁ ଏବଂ ଏହା ହେଉଛି ବୈଦ୍ୟୁତିକ ଗଣମାଧ୍ୟମ ।

ସାଂପ୍ରତିକ ଯୁଗରେ ଗଣମାଧ୍ୟମର ଭୂମିକା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ ଦେଶକୁ ସମୃଦ୍ଧ ଓ ବିକଶିତ କରିବାକୁ ହେଲେ ତାହା ଏହି ଗଣମାଧ୍ୟମ ଉପରେ ହିଁ ନିର୍ଭର କରେ । ତେଣୁ ଗଣମାଧ୍ୟମକୁ କେତେକ ନିୟମ ମାନି ପ୍ରଚାର ଓ ପ୍ରସାର କରିବା ଆବଶ୍ୟକ । ଯେପରି ଚାରାଟିଏ ହେବା ପୂର୍ବରୁ ମଞ୍ଜିର ଶୁଦ୍ଧତାକୁ ପରୀକ୍ଷାନିରୀକ୍ଷା କରାଯାଏ, ଠିକ୍ ସେହିପରି ସମ୍ବାଦଟିଏ ପରିବେଷଣ କରିବା ପୂର୍ବରୁ ତା'ର ନୈତିକତା ପ୍ରତି ସର୍ବପ୍ରଥମେ ଦୃଷ୍ଟି ଦେବା ବାଞ୍ଛନୀୟ । ନଚେତ୍ ଏହାର ବିପରୀତ ଫଳ ସମସ୍ତଙ୍କୁ ଭୋଗିବାକୁ ପଡ଼ିବ ।

ପତ୍ରପତ୍ରିକାରେ ମଧ୍ୟ ଏହିପରି ଅଶ୍ଳୀଳ ଓ ରୁଚିହୀନ ଫଟୋଚିତ୍ରକୁ ପ୍ରଚ୍ଛଦରେ ସ୍ଥାନିତ କରି ବ୍ୟବସାୟିକ ସଫଳତା ମିଳିପାରେ ମାତ୍ର ନୈତିକ ମୂଲ୍ୟବୋଧକୁ ହତ୍ୟାକରି ଏଥିରୁ ମଣିଷ ସମାଜର ଉନ୍ନତି ଆଶା କରିବା ବୃଥା । ବର୍ତ୍ତମାନ ସର୍ବତ୍ର ଏହିପରି ନୈତିକତା ବିହୀନ ବିଜ୍ଞାପନକୁ ଲକ୍ଷ୍ୟ କଲେ ସମାଜ ଯେ ଆଜି କେଉଁ ସ୍ତରରେ ପହଞ୍ଚିଛି ତାହା ହୃଦୟଙ୍ଗମ କରାଯାଇପାରେ । ସାଂପ୍ରତିକ ଅପରାଧମୂଳକ ଘଟଣା ପ୍ରାୟତଃ ନାରୀମାନଙ୍କୁ ନେଇ ସଂଘଟିତ ହେଉଛି ।

ବର୍ତ୍ତମାନ ପ୍ରତିଯୋଗିତାମୂଳକ ଦୌଡ଼ରେ ବିଭିନ୍ନ ବର୍ଗର ଓ ବିଭିନ୍ନ ବୟସର ପ୍ରତିଯୋଗୀମାନେ ଅଂଶଗ୍ରହଣ କରି ନୃତ୍ୟ, ସଂଗୀତ, ଚିତ୍ରକଳା ପ୍ରଭୃତିରେ ଅଂଶଗ୍ରହଣ କରି ନିଜର ପାରଦର୍ଶିତାକୁ ପ୍ରମାଣ କରିବାକୁ ଉଦ୍ୟମ କରୁଛନ୍ତି । ଯେଉଁଠିକି ପ୍ରତିଯୋଗୀଙ୍କ ପିତାମାତା ମଧ୍ୟ ନିର୍ନିମେଷ ନୟନରେ ଚାହିଁ ଉପଭୋଗ କରୁଥାଆନ୍ତି ତାଙ୍କ ସନ୍ତାନସନ୍ତତିଙ୍କ କଳାକୀର୍ତ୍ତିକୁ । ମାତ୍ର ଏଠାରେ ଉଲ୍ଲେଖ କରିବା କଥା ଯେ ଯେଉଁମାନେ ବିଚାରକ ମଞ୍ଚାସୀନ ଥାଆନ୍ତି, ସେମାନଙ୍କ ପୋଷାକ ପରିଚ୍ଛଦକୁ ଦେଖିଲେ ସମସ୍ତେ ଜାଣିପାରିବେ ବେକଠାରୁ ପାଦପର୍ଯ୍ୟନ୍ତ ସ୍ୱଳ୍ପ ବସ୍ତ୍ର ପରିଧାନ କରି ନିର୍ଲ୍ଲଜଭାବେ ବସିଥାଆନ୍ତି । ଏହା ସେହି ପ୍ରତିଯୋଗୀ ଏବଂ ସେମାନଙ୍କ ଅଭିଭାବକଙ୍କୁ କେତେ ମାତ୍ରାରେ ମାନସିକ ଯନ୍ତ୍ରଣା ଦେଉଥିବ, ତାହା ସେହିମାନେ ହିଁ କହିପାରିବେ । ସ୍ୱାଧୀନତାର ଅର୍ଥ ନୁହେଁ ଯେ ଯାହା ଇଚ୍ଛା ତାହା କରିଯିବା । ଏଥିପାଇଁ କିଛି ସାମାଜିକ ନିୟମ ଓ ନିଜର ବିବେକ ଅନୁମୋଦିତ କାର୍ଯ୍ୟ ସମ୍ପନ୍ନ କରିବା ବିଧେୟ । ସୁତରାଂ ଏ କ୍ଷେତ୍ରରେ ସମାଜର ସମ୍ମାନବୃଦ୍ଧି ପରିବର୍ତ୍ତେ ସମାଜର ଯେ ନୈତିକ ସ୍ଖଳନ ଘଟୁଛି ଏଥିପାଇଁ ଗଣମାଧ୍ୟମକୁ ଦାୟୀ କରାଯାଇପାରେ । କାରଣ ଯେଉଁମାନେ ଏହାକୁ ପ୍ରଯୋଜନା କରୁଛନ୍ତି, ସେମାନେ ନୈତିକ ମୂଲ୍ୟ ଆଧାରରେ ଏହାକୁ କରିବା ଉଚିତ ।

ବର୍ତ୍ତମାନ ଦୂରଦର୍ଶନରେ ପ୍ରସାରିତ ଅନେକ ଧାରାବାହିକରେ ନାରୀମାନଙ୍କୁ ଯେଉଁ ଚରିତ୍ରରେ ଜଣେ ସ୍ୱାର୍ଥପର, ଅହଙ୍କାରୀ, ଚରିତ୍ରହୀନ ଅସତ୍ ଉପାୟ ଅବଲମ୍ବନ, ଅଶାଳୀନ ପୋଷାକ ପରିଧାନ ଏବଂ ଅମାନବୀୟ ଆଚରଣ ପ୍ରଦର୍ଶନ କରାଯାଉଛି, ଏଥିରୁ ମନୁଷ୍ୟସମାଜ କ'ଣ ଶିକ୍ଷାଲାଭ କରୁଛି ? ତେଣୁ ଗଣମାଧ୍ୟମର ଏପରି ଭୂମିକା ରହିବା ବାଞ୍ଛନୀୟ ଯାହା କି ସମାଜକୁ ଦିଗ୍‌ଦର୍ଶନ ଦେବା ସହିତ ଗଠନମୂଳକ ପ୍ରେରଣା ମଧ୍ୟ ରହିବା ଆବଶ୍ୟକ ।

ସମ୍ବାଦ ପରିବେଷଣରେ ବାସ୍ତବ ତଥ୍ୟକୁ ଉନ୍ମୋଚନ କରିବା ଗଣମାଧ୍ୟମର କର୍ତ୍ତବ୍ୟ । ମାତ୍ର କେତେକ କ୍ଷେତ୍ରରେ ଏହା ଉଲଙ୍ଘନ କରାଯାଉଛି । କାହାର ବ୍ୟକ୍ତିଗତ ଶତ୍ରୁତା ହେଉ ଅଥବା ରାଜନୈତିକ ଶତ୍ରୁତା କାରଣରୁ ଘଟୁଥିବା ହତ୍ୟା, ଚୋରି, ଅପହରଣ ଏବଂ ଲୁଣ୍ଠନ କ୍ଷେତ୍ରରେ ପ୍ରକୃତ ଘଟଣାକୁ ଲୁଚାଇ ଏଭଳି ସମାଜ ପରିବେଷଣ କରାଯାଇଥିବ ଯେ ନିର୍ଦ୍ଦୋଷଟିଏ ଦୋଷୀଭାବେ ଏବଂ ଅପରାଧୀ ବା ହତ୍ୟାକାରୀଟିଏ ନିର୍ଦ୍ଦୋଷ ବ୍ୟକ୍ତି ଭଳି ରାଜରାସ୍ତାରେ ଛାତିଫୁଲାଇ ଚାଲୁଥିବ । ବର୍ତ୍ତମାନ ନୈତିକତା ଦୃଷ୍ଟିରୁ ଗଣମାଧ୍ୟମରେ ଏପରି ସମ୍ବାଦ ପରିବେଷଣ କରାଯାଇ ଯାହା କି ସମସ୍ତେ ଏହାର ସତ୍ୟତା ଉପଲବ୍ଧ କରିବାକୁ ଆଉ କୌଣସି ଦ୍ୱିଧା ପ୍ରକାଶ କରିବେ ନାହିଁ ।

ସମ୍ବାଦପତ୍ର ବା ପତ୍ରିକାରେ ବିଭ୍ରାନ୍ତମୂଳକ ତଥ୍ୟ ପରିବେଷଣ କରି ବ୍ୟବସାୟିକ ଲାଭ ମନୋବୃତ୍ତିକୁ ଗଣମାଧ୍ୟମ ପରିହାର କରିବା ଉଚିତ । ଯାହା ସମାଜ ପାଇଁ ମଙ୍ଗଳକାରୀ ସେହିପରି କାର୍ଯ୍ୟକରି ଗଣମାଧ୍ୟମର ବିଭିନ୍ନ ବିଭାଗ ସୁନାମ ଅର୍ଜନ କରନ୍ତୁ । ବ୍ୟକ୍ତି, ରାଜ୍ୟ ଏବଂ ଦେଶ ଉନ୍ନତିର ଚରମ ସୀମାରେ ଉପନୀତ ହୋଇ ପରମ ଆଦର୍ଶ ସୃଷ୍ଟି କରନ୍ତୁ, ଏହା ହିଁ ଗଣମାଧ୍ୟମ ପାଇଁ ଏକ ଯୁଗାନ୍ତକାରୀ ଆହ୍ୱାନ ହେବ । ଯାହାଫଳରେ ଗଣମାଧ୍ୟମର ନୈତିକ ମୂଲ୍ୟବୋଧର ବିକାଶ ଘଟିବ ।

ଚାଟରା (ନଡ଼ିଆ ବାଗ)
ଜଗତସିଂହପୁର-୭୫୪୧୦୩



# ଗଣମାଧ୍ୟମରେ ନୈତିକତା

ତୁଷାରକାନ୍ତ

'ନୈତିକତା' ଏପରି ଗୋଟିଏ ଜିନିଷ, ଯାହାକୁ ବ୍ୟାଖ୍ୟା କରିବା ଏକ କଷ୍ଟସାଧ୍ୟ ବ୍ୟାପାର । ଜଣଙ୍କ ପାଇଁ ଯାହା 'ନୈତିକତା'ର ଗଣ୍ଡିରେ ଯିବ, ଅନ୍ୟଜଣଙ୍କ ପାଇଁ ତାହା ହୁଏତ 'ଅନୈତିକ' ଧାରାରେ ଯାଇପାରେ । ତେଣୁ ଏ ବାବଦରେ କିଛି ଲେଖିଲା ବେଳକୁ ସାବଧାନ ହୋଇ ଲେଖିବାକୁ ପଡ଼େ, କାରଣ ଶାସ୍ତ୍ର କହୁଛି 'ଅପ୍ରିୟ ସତ୍ୟ କହିବ ନାହିଁ/ଲେଖିବ ନାହିଁ ।' ଯେହେତୁ ଏପରି କରିବା/ଲେଖିବା ସେଇ ଶାସ୍ତ୍ରକୁ ଭଣତି କରିବା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ରୂପେ ପରିଗଣିତ ହୋଇପାରେ । ମହାଭାରତ ଯୁଦ୍ଧର ଆରମ୍ଭ କାଳରେ ଭୀଷ୍ମଦେବ, ତାଙ୍କ ମା 'ଗଙ୍ଗା'ଙ୍କୁ ପଚାରିଲେ, 'ମା ! ଯେଉଁ ଆର୍ଯ୍ୟବର୍ତ୍ତ ନୈତିକତାର ଶୀର୍ଷରେ ଥିଲା, ତାର ଆଜି ଏ ଅବସ୍ଥା କାହିଁକି ? ମା' ଗଙ୍ଗା ଉତ୍ତର ଦେଲେ, ''ବତ୍ସ ! ସିଡ଼ିଟିଏରେ ଚଢ଼ିଲେ, ଶେଷ ପାହଚଟିରେ ପହଞ୍ଚିବା ପରେ ଓହ୍ଲାଇବାକୁ ପଡୁଥିବା ଭଳି, ଆର୍ଯ୍ୟବର୍ତ୍ତର ଏବେ ଓହ୍ଲେଇବା ପାଳି ।'' କିନ୍ତୁ ଦୁଃଖର କଥା, ସେଇ ଓହ୍ଲାଇବା ଅନେକ ଦିନରୁ ଗତ ହୋଇଯାଇଥିଲେ ମଧ୍ୟ, ସ୍ୱୟଂ ଶ୍ରୀକୃଷ୍ଣ ଓହ୍ଲେଇଆସି ଅଧର୍ମର ବିନାଶ କରିଥିଲେ ମଧ୍ୟ 'ନୈତିକତା' ରୂପକ ଚରିତ୍ରଟି ସିଡ଼ିର ସବାତଳ ପାହାଚରେ ରହିଯାଇଛି ଓ ଆଉ ଉପରକୁ ଚଢ଼ିବାର ପ୍ରୟାସ କରୁନାହିଁ । 'ନୈତିକତା' ଇତିହାସର ବିଷୟ ହୋଇଗଲାଣି ।

ଯେହେତୁ 'ନୈତିକତା ପାଳନ' କରିବା ଅତ୍ୟନ୍ତ କଷ୍ଟ କାମଟିଏ ଓ 'ଅନୈତିକତା' ଡିଆଁରୋଗ ସଦୃଶ ଯେହେତୁ, ଆମ ଗଣତନ୍ତ୍ରର ସମ୍ବିଧାନ ସ୍ୱୀକୃତ ତିନୋଟି ସ୍ତମ୍ଭ 'ନୈତିକତା' ଶବ୍ଦଟିକୁ ଭୁଲିଯାଇଥିବା ପରିପ୍ରେକ୍ଷୀରେ ସ୍ୱଘୋଷିତ ଚତୁର୍ଥ ସ୍ତମ୍ଭ 'ଗଣମାଧ୍ୟମ'ଟି କାହିଁକି ଯେ 'ନୈତିକତା'କୁ ଆପଣେଇବ, ତାହା ହିଁ ବିଚାର୍ଯ୍ୟ । ପଢ଼ିଥିବା ତଥ୍ୟ ଅନୁଯାୟୀ, ଗୋଟିଏ ବୈଦ୍ୟୁତିକ ଗଣମାଧ୍ୟମ (ଟି.ଭି.) ଚ୍ୟାନେଲ ଖୋଲିବା ପାଇଁ ଅତି କମ୍‌ରେ ୭୦/୮୦ କୋଟି ଟଙ୍କା ଖର୍ଚ୍ଚର ଆବଶ୍ୟକତା ପଡ଼େ ଓ ମାସିକ ସର୍ବନିମ୍ନ ଖର୍ଚ୍ଚ ହୁଏ ୪୫/୫୦ ଲକ୍ଷ ଟଙ୍କା । ଯେଉଁଥିରୁ ଆଦାୟ ହୁଏ, ସର୍ବୋଚ୍ଚ ୩୫/୪୦ ଲକ୍ଷ ଟଙ୍କା । କ୍ଷତି ହେଉଥିଲେ ମଧ୍ୟ ଏପରି ଚ୍ୟାନେଲଗୁଡ଼ିକ ଛତୁ ଫୁଟିଲା ପରି ମାଡ଼ିଯିବାର ଯେଉଁ କାରଣ ସେହି ତଥ୍ୟଟିରେ ଦର୍ଶାଯାଇଥିଲା, ତାହା ହେଲା ''ଆଗରୁ ମନ୍ତ୍ରୀମାନଙ୍କୁ ଭେଟିବାକୁ ସେମାନଙ୍କ ଘର ବା କାର୍ଯ୍ୟାଳୟ ସାମ୍ନାରେ ସାମ୍ବାଦିକମାନଙ୍କୁ ଘଣ୍ଟାଘଣ୍ଟା ଧରି ଅପେକ୍ଷା କରିବାକୁ ପଡୁଥିଲା । ଏହାପରେ ସେ ଲେଖାଟିରେ ଆଉ କୌଣସି ତଥ୍ୟ ଦିଆଯାଇ ନଥିବାରୁ, ''ସେହି ସଂସ୍ଥାଗୁଡ଼ିକ ନୈତିକତା ଦେଖେଇ କ୍ଷତି ସହି ଚାଲିବେ ବା ଲାଭ କରିବାକୁ ଅନୈତିକ ଉପାୟ ଅବଲମ୍ବନ କରିବେ'' ତାହାର ବିଚାର ପାଠକମାନଙ୍କ ଉପରେ ଛାଡ଼ି ଦିଆଯାଉଛି ।

ଏବେ ଆଲୋଚନା କରିବା ''ଛାପା ଗଣମାଧ୍ୟମ-Print Media" ବାବଦରେ । ଗୋଟିଏ ସାପ୍ତାହିକୀ ପତ୍ରିକାର ସ୍ୱ-ନକ୍ଷତ୍ର ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗଦେଇଥିବା ମନ୍ତ୍ରୀ ମହୋଦୟ ଥଟ୍ଟାରେ କହିଦେଲେ ଅନେକ ପତ୍ରିକା କେବଳ ସ୍ୱ-ନକ୍ଷତ୍ର ଦିନ ହିଁ ଆତ୍ମପ୍ରକାଶ କରନ୍ତି । ତଥାପି ମଧ୍ୟ ଆମେ ସେମାନଙ୍କୁ ବିଜ୍ଞାପନ ଦେଉ'' । ଯେଉଁ ଦେଶରେ ସାଧାରଣ ଲୋକଙ୍କ ପାଇଁ ''ଟଙ୍କା ଗଛରେ ଫଳେ ନାହିଁ'', ଦେଶରେ ଉପରୋକ୍ତ ବଦାନ୍ୟତା ପ୍ରମାଣ କରେ ଯେ ଗଣମାଧ୍ୟମ ବ୍ୟବସାୟରେ ତିଷ୍ଠି ରହିବାକୁ ହେଲେ ଉଭୟ ''ଗଣମାଧ୍ୟମ ଓ ପ୍ରଶାସନ''କୁ ଅବଶ୍ୟ ନୀତିହୀନ ହେବାକୁ ପଡ଼ିବ । 'ନୈତିକତା' ଭଳି ଶବ୍ଦଟିର ପରିଧି ଭିତରେ ଆସେ କି ନାହିଁ, ତାହା ସେଇମାନଙ୍କୁ ଜଣା । ତା ଛଡ଼ା, ''ଭାଇ ଲେଖିଦେବି-ନାଇଁ ମ, ତୁମ ନାମରେ ଲେଖିବାକୁ କଲମ ଯାଉ

ନାହିଁ'' ଭଳି ଧାରାଗୁଡ଼ିକ 'ନୈତିକତା' ଦୃଷ୍ଟିରୁ ବା 'ଅନୈତିକ' ଧାରା, ତାହା ବିଚାର କରିବାକୁ ହକ୍‌ଦାର ଯେଉଁମାନେ, ସେଇମାନେ ତ ସେଇ ପ୍ରଚ୍ଛନ୍ନ ଧମକର ସ୍ରଷ୍ଟା ।

ଆମେ ଜାଣୁ ଯେ, ସାଧାରଣତଃ ବିଜ୍ଞାପନଗୁଡ଼ିକ ପାଇଁ ଦେୟ ଦେବାକୁ ପଡ଼ିଥାଏ ଓ 'ସମ୍ବାଦ', ସାମ୍ବାଦିକମାନଙ୍କ ପ୍ରଦତ୍ତ ତଥ୍ୟ ଉପରେ ଆଧାରିତ ଥାଏ । ଆଜି ଯେଉଁ ପ୍ରାର୍ଥୀଙ୍କ ସପକ୍ଷରେ ସମ୍ବାଦ ପରିବେଷଣ, ଆସନ୍ତାକାଲିକୁ ତାଙ୍କରି ପ୍ରତିଦ୍ୱନ୍ଦୀଙ୍କଠାରୁ ମାଲ ପକେଇଦେଇ, ତାଙ୍କରି ପ୍ରଶଂସାରେ ମୁଖରିତ ସମ୍ବାଦ ପରିବେଷଣ ପଛରେ ଲକ୍ଷ ଲକ୍ଷ ଟଙ୍କାର କାରବାର ହୁଏ ବୋଲି ସ୍ୱୟଂ ନିର୍ବାଚନ କମିଶନର ମତ ଦେଇଛନ୍ତି ଓ ଏହା ଯେପରି ନ ହୁଏ, ସେଥିପାଇଁ କଟକଣା ବି ଜାରି କରିଛନ୍ତି । ଏହିପରି "Paid News" ସହିତ "Embeded News" ରୂପକ କଥାଟିଏ ବି ଶୁଣିବାକୁ ମିଳିଲା, ଯାହା ଘଟିଥିଲା ଇରାକ ଯୁଦ୍ଧବେଳେ । ଆମେରିକାର ସାମରିକ ବାହିନୀ, ସାମ୍ବାଦିକମାନଙ୍କୁ ବନ୍ଧୁକ ଦେଖେଇ କହିଥିଲେ ''ଆମେ ଯାହା କହୁଛୁ, ସେଇ ଅନୁସାରେ ସମ୍ବାଦ ପଠାଅ, ନଚେତ୍ ଖାଅ ଗୁଳି ।''

କିଛି ବର୍ଷ ତଳେ, ବୈଦ୍ୟୁତିକ ଗଣମାଧ୍ୟମ (ଟିଭି) ଚ୍ୟାନେଲଟିଏ ଦେଖୁଥିବା ଅବସ୍ଥାରେ ବିହାର ପ୍ରଦେଶର ଗୋଟିଏ ଡାକ୍ତରଖାନା ଖୋଲିବା ବାବଦରେ ଆଲୋଚନାଟିଏ ଶୁଣିବାକୁ ମିଳିଥିଲା । ଡାକ୍ତରଖାନାଟିଏ ପ୍ରତିଷ୍ଠା ପାଇଁ ଶୁଭ ଦିଆଯାଇଥିଲେ ମଧ୍ୟ, ଅନେକ ବର୍ଷ ଧରି ଆଉ କୌଣସି କାମ କରାଯାଇ ନ ଥିଲା ଓ ତା ଭିତରେ ସରକାର ବି ବଦଳି ଯାଇଥିଲେ । ଜଣେ ଶ୍ରୋତା, ''ଏତେ ବର୍ଷ ପରେ ମଧ୍ୟ ପ୍ରକଳ୍ପଟି କେବଳ ଶୁଭ-ଦିଆରେ ରହିଗଲା''ବୋଲି ଆପତ୍ତି କରନ୍ତେ, କାର୍ଯ୍ୟକ୍ରମର ସଞ୍ଚାଳକ ମହୋଦୟ, ସେଇ ସମୟର ସରକାରଙ୍କ ଦଳର ପ୍ରତିନିଧିଙ୍କୁ, ତାଙ୍କର ଉତ୍ତର ଦେବା ପାଇଁ କହିଥାନ୍ତି ।

ଆମେ ଜାଣୁ ଯେ ଗଣତାନ୍ତ୍ରିକ ସ୍ତମ୍ଭଗୁଡ଼ିକର ସାହାଯ୍ୟ ନେଇ, ଠକ ସଂସ୍ଥାଗୁଡ଼ିଏ ଲୋକମାନଙ୍କୁ ଅନେକ ଠକନ୍ତି । ସତର୍କତା ବିଭାଗର ବାର୍ଷିକ କୋଟା ପୂରଣ ପାଇଁ ବା କର୍ତ୍ତୃପକ୍ଷଙ୍କ କ୍ରୋଧ ଯୋଗୁ, ବେଳେବେଳେ ଏହିପରି ଏକ ସଂସ୍ଥାରୁ ଗୋଟିଏ ଯୋଡ଼ିଏ ଉପରେ କାଉଁ ଚଢ଼ାଉ ହୁଏ ଓ ସେ ବାବଦର ସମ୍ବାଦ 'ଗଣମାଧ୍ୟମ'ରେ ଛାଇ ହୋଇଯାଏ । ଠିକ୍ ତା ପରେ ପରେ, ସେଇ ଠକ ସଂସ୍ଥାଗୁଡ଼ିକ ଦ୍ୱାରା ପ୍ରଦତ୍ତ ବା ଏହା ଆମ ନାମରେ ମିଥ୍ୟା ଆରୋପ, ଆମେ ଗରାଖଙ୍କୁ ସେବା ଯୋଗାଇଦେବାକୁ ସେମାନଙ୍କ ଟଙ୍କା ଫେରାଇ ଦେବାକୁ ପ୍ରତିଶ୍ରୁତିବଦ୍ଧ'' ଉପରେ ଆଧାରିତ ପୃଷ୍ଠାପୃଷ୍ଠାର ବିଜ୍ଞାପନ ଆମେ ପଢ଼ିବାକୁ ପାଉ । ଯେହେତୁ ଖବରକାଗଜରେ ବାହାରୁଥିବା ଲେଖା ଉପରେ ଲୋକଙ୍କର ଅନେକ ଭରସା'' ସେହେତୁ ଲୋକେ ପୁଣି ସେଇ ମାୟାରେ ପଡ଼ି ସର୍ବସ୍ୱାନ୍ତ ହୁଅନ୍ତି ଓ ପ୍ରକ୍ରିୟାଟି ଗଡ଼ିଚାଲେ ଓ ଗଣମାଧ୍ୟମର ଲାଭ ଯାହାକୁ ଯେତେ ।

ଗଙ୍ଗୋତ୍ରୀ କଳୁଷିତ ହେଲେ, ଗଙ୍ଗାନଦୀ କଳୁଷିତ ହେବାକୁ ବାଧ୍ୟ ଭଳି, ଗଣତନ୍ତ୍ରର ଅନ୍ୟ ସବୁ ସ୍ତମ୍ଭ ଅନୈତିକ ପନ୍ଥା ଅନୁସରଣ କରି କଳୁଷିତ ହୋଇସାରିଥିବା ପରିପ୍ରେକ୍ଷୀରେ, ଗଣମାଧ୍ୟମ ରୂପକ ଚତୁର୍ଥ ସ୍ତମ୍ଭଟି 'ନୈତିକତା'କୁ ଆଧାର କରି ତିଷ୍ଠି ରହିବା ବଡ଼ ଦୁରୂହ ବ୍ୟାପାର । ଏହି ସ୍ତମ୍ଭଟି ମୁଖ୍ୟତଃ ଶିଳ୍ପପତିମାନଙ୍କ ମାଲିକାନାକୁ ଆସିଗଲା ପରେ 'ନୈତିକତା'କୁ ଆଧାର କରି ପରିଚାଳନା କରାଯିବା ଆଶା କେବଳ ମରୀଚିକା ସଦୃଶ । ଜରୁରୀକାଳୀନ ପରିସ୍ଥିତି ସମୟରେ ଅଧିକାଂଶ ସମ୍ବାଦପତ୍ର ସାପ୍ତାହିକୀ, ପାକ୍ଷିକ, ମାସିକ ପତ୍ରିକା ଗଣମାଧ୍ୟମର 'ନୈତିକତା'କୁ ବଳି ଦେଇଥିଲେ କିନ୍ତୁ କିଛି ସ୍ୱଳ୍ପ ସମ୍ବାଦପତ୍ର, ପତ୍ରିକା ପ୍ରକାଶନ ବନ୍ଦ ହୋଇଯାଇଥିଲା ସିନା, ଆଦର୍ଶ ଓ ନୀତିରୁ ବିଚ୍ୟୁତ ହୋଇ ନଥିଲେ । ଦିଲ୍ଲୀରୁ ପ୍ରକାଶିତ ପାକ୍ଷିକ ଇଂରାଜୀ ପତ୍ରିକା MAINSTREAM" ର ପ୍ରଖ୍ୟାତ ସମ୍ପାଦକ ଶ୍ରୀ ନିଖିଳ ଚକ୍ରବର୍ତ୍ତୀ ତାଙ୍କ ପତ୍ରିକାଟିକୁ ବନ୍ଦ କରିଦେବା ଅବସରରେ, ଶେଷ ପ୍ରକାଶନରେ ଲେଖିଥିଲେ "We shall overcome." । ଯେଉଁଦିନ ଅଧିକାଂଶ ଗଣମାଧ୍ୟମ ଏଭଳି ନୈତିକତା ପ୍ରଦର୍ଶନ କରିପାରିବେ, ସେଦିନ ହୁଏତ ସେମାନଙ୍କ ଦ୍ୱାରା 'ନୈତିକତା' ଉପରେ ଲେଖା ଜନସାଧାରଣଙ୍କ ଦ୍ୱାରା ଗୃହିତ ହୋଇପାରିବ, ଯାହା ସାମାଜିକ ପରିବର୍ତ୍ତନରେ ସହାୟକ ହେବ । ମ୍ୟାଡ଼ାମ ନୀରା ରାଡ଼ିଆଙ୍କ ଟେପ୍‌ରେ, ପ୍ରଖ୍ୟାତ ସାମ୍ବାଦିକମାନଙ୍କ ବାବଦରେ ପର୍ଦ୍ଦାଫାସ ହେବା ପରେ, ''ଜଗତୀକରଣ ଯୁଗ'ରେ ଗଣମାଧ୍ୟମ ଦ୍ୱାରା 'ନୈତିକତା' ଆପଣେଇବା ତଥା ସମାଜଟି ସେଇ ଦିଗରେ ପରିଚାଳିତ କରିବାକୁ ଦିଗ୍‌ଦର୍ଶନ ଦେବା, ବାସ୍ତବତା ଉପରେ ଆଧାରିତ କି ?

ବାଗଲପୁର, ଜଗତସିଂହପୁର



# ଓଡ଼ିଶାରେ ସାମ୍ବାଦିକତା ବୃତ୍ତି

ଇଂ. ନଳିନୀକାନ୍ତ ପଣ୍ଡା

ଯେତେବେଳେ ସାରା ବିଶ୍ୱରେ ପ୍ରିଣ୍ଟ ମିଡ଼ିଆ ବା ସମ୍ବାଦପତ୍ରଗୁଡ଼ିକ ବନ୍ଦ ହେବାର ଲାଗିଛି ଠିକ୍ ସେହି ସମୟରେ ଓଡ଼ିଶାରେ ପ୍ରିଣ୍ଟ ମିଡ଼ିଆ ବା ଛପା ଯାଉଥିବା ସମ୍ବାଦପତ୍ର ନୂତନ ସଂସ୍କରଣ ପ୍ରକାଶ କରୁଛନ୍ତି, ଯାହାକି ଏକ ଶୁଭ ସୂଚନା । ତେଣୁ ଓଡ଼ିଶାକୁ ସମ୍ବାଦପତ୍ରର 'ଅମରାବତୀ' କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାରେ ମଧ୍ୟ ସ୍ୱଳ୍ପ ମୂଲ୍ୟରେ ସମ୍ବାଦପତ୍ର ମିଳୁଛି ଏହା ହେଉଛି ଅତ୍ୟନ୍ତ ଆନନ୍ଦର କଥା । ବିଗତ ଦଶନ୍ଧିରେ ମିଳୁଥିବା ଖବର କାଗଜରେ ଦୁଇ ତିନି ଦିନ ତଳର ଖବରକୁ ମୁଖ୍ୟ ଖବରରେ ସ୍ଥାନିତ କରାଯାଉଥିବାବେଳେ ଏବେ କିଛି ଘଣ୍ଟା ତଳର ଖବରକୁ ମୁଖ୍ୟ ଖବରରେ ସ୍ଥାନିତ ଦେଉଛି । ଏହା ଓଡ଼ିଶାର ପାଠକମାନେ ନିଶ୍ଚୟ ଅନୁଭବ କରିପାରୁଥିବେ ।

କିନ୍ତୁ ଯଦି ଓଡ଼ିଶାର ସମ୍ବାଦପତ୍ରର ପ୍ରକୃତ ସ୍ଥିତିକୁ ଗଭୀର ଭାବରେ ଅନୁଧ୍ୟାନ କରିବା ସମ୍ବାଦପତ୍ର ଶିଳ୍ପର ସଂକଟଗୁଡ଼ିକ ନିଶ୍ଚୟ ଜଣା ପଡ଼ିବ । ବିଭିନ୍ନ ଅତ୍ୟାବଶ୍ୟକ ସାମଗ୍ରୀର ମୂଲ୍ୟ ବୃଦ୍ଧି ଆକାଶ ଛୁଆଁ ହୋଇଛି । ସେହି ଅନୁପାତରେ ସାମ୍ବାଦିକମାନଙ୍କର ଦରମା ଅତ୍ୟନ୍ତ ନଗଣ୍ୟ । ଅଧିକାଂଶ ଆଗଧାଡ଼ିର ଖବରକାଗଜର ସାମ୍ବାଦିକମାନଙ୍କୁ ସରକାରୀ ମଜୁରୀଠାରୁ କମ୍ ମଜୁରୀ ମିଳେ । କିନ୍ତୁ ଏହି ସାମ୍ବାଦିକମାନେ ରାଜ୍ୟର କୋଣ ଅନୁକୋଣରୁ ଖବର ସଂଗ୍ରହ କରି ପରିବେଷଣ କରିଥାଆନ୍ତି । ଏହି ସାମ୍ବାଦିକ ବନ୍ଧୁମାନେ ଯେ କେବଳ ଖବର ସଂଗ୍ରହ ବା ପରିବେଷଣ କାର୍ଯ୍ୟ କରିଥାଆନ୍ତି ତାହା ନୁହେଁ, ବରଂ ସେମାନେ ସାଧାରଣ ଜନତାଙ୍କୁ ସରକାରଙ୍କ ବିଭିନ୍ନ ଲୋକାଭିମୁଖୀ କାର୍ଯ୍ୟକ୍ରମର ସଫଳ ରୂପାୟନ, ଅଧିକାର କର୍ତ୍ତବ୍ୟ ସର୍ବୋପରି ଦୁର୍ନୀତି ବିରୋଧୀ ଆନ୍ଦୋଳନରେ 'ନେପଥ୍ୟ ନାୟକ' ଭୂମିକା ନେଇଥାନ୍ତି । ସୂଚନା ଅଧିକାର ବଳରେ ସେମାନେ ବିଭିନ୍ନ ତଥ୍ୟ ଲୋକଲୋଚନକୁ ଆଣିଥାଆନ୍ତି । ଅଧିକାଂଶ ସାମ୍ବାଦିକ ସୂଚନାଧିକାର କର୍ମୀ ଭଳି କାମ କରନ୍ତି ବା ସୃଷ୍ଟି ହେଉଥିବା କର୍ମୀ ମାନଙ୍କୁ ସହାୟତା କରିଥାନ୍ତି ।

ଅଧିକାଂଶ ସାମ୍ବାଦିକ ବନ୍ଧୁମାନେ ବିଭିନ୍ନ ସ୍ୱେଚ୍ଛାସେବୀ ଭୂମିକା ନେଇଥାଆନ୍ତି । ସର୍ବୋପରି ଏହିମାନେ ଆମ ଭାଷା ସାହିତ୍ୟର ସୁରକ୍ଷା ପାଇଁ ମଧ୍ୟ କାମ କରନ୍ତି । କେତେବେଳେ ଶୁଦ୍ଧ ଓଡ଼ିଆ ଲିଖନ ପ୍ରତିଯୋଗିତା କାର୍ଯ୍ୟକ୍ରମ ତ କେତେବେଳେ ବିଭିନ୍ନ ପୌରାଣିକ ବିଷୟବସ୍ତୁର ସରଳ ଉପସ୍ଥାପନା ପୁଣି କେତେବେଳେ ଅବଲୁପ୍ତ ଲୋକ କଳା, ପର୍ଯ୍ୟଟନସ୍ଥଳୀର ପ୍ରଚାର ପ୍ରସାର ପାଇଁ କାମ କରିଥାଆନ୍ତି ।

ରାଜ୍ୟର ଅଧିକାଂଶ ପାଠକ ନିଶ୍ଚୟ ଅନୁଭବ କରିଥିବେ ପ୍ରଶାସନ ବା ସରକାରୀ କଳ ପହଞ୍ଚିବା ପୂର୍ବରୁ ସାମ୍ବାଦିକମାନେ ପହଞ୍ଚି ଘଟଣାଟିକୁ ବା ସମସ୍ୟାକୁ ଲୋକଲୋଚନକୁ ଆଣିଥାଆନ୍ତି ।

ଏହିଭଳି ମହତ୍ କାର୍ଯ୍ୟ କରୁଥିବା ବନ୍ଧୁମାନେ ନାମମାତ୍ର ପାଉଣାରେ କାମ କରିଥାଆନ୍ତି । କେବଳ ଏତିକିରେ ତାଙ୍କ ଦୁଃଖ ସୀମିତ ହୋଇନାହିଁ, ଏମାନେ ଅଧିକାଂଶ ସମୟରେ ମରଣାନ୍ତକ ଆକ୍ରମଣର ମଧ୍ୟ ଶିକାର ହୁଅନ୍ତି । 'ଗରିବ ମାଇପ ସବୁରି ଶାଳୀ' ନ୍ୟାୟରେ କେତେବେଳେ ମାଫିଆ ତ କେତେବେଳେ ପୋଲିସ୍ । ସତ୍ୟର ପରଦା ଫାସ୍ କରୁଥିବାରୁ ଦୁର୍ନୀତିଗ୍ରସ୍ତ ଅଫିସର ଏବଂ ରାଜନୈତିକ ନେତାମାନେ ମଧ୍ୟ ଏମାନଙ୍କୁ ମାନହାନି ମକଦ୍ଦମା ଏପରିକି ଜେଲ୍‌କୁ ମଧ୍ୟ ପଠାଇ ଦେଉଛନ୍ତି । ସାମ୍ବାଦିକମାନଙ୍କୁ ସମାଜରେ ନିମ୍ନ ଚକ୍ଷୁରେ ଦେଖାଯାଉଛି ।

ସବୁଠାରୁ ବଡ଼ ଦୁଃଖର କଥା ସରକାର ହାତୀଗଣନା, ବାଘ ଗଣନା, କାର୍ଯ୍ୟକ୍ରମ ତିନିମାସରେ ସଂପୂର୍ଣ୍ଣ କରୁଥିବାବେଳେ

ଦୀର୍ଘ ବର୍ଷ ବିତି ଯାଇଥିଲେ ମଧ୍ୟ ସାମ୍ବାଦିକ ଚିହ୍ନଟ ଏବଂ ପରିଚୟ ପତ୍ର ପ୍ରଦାନ କାର୍ଯ୍ୟକ୍ରମ ସଂପୂର୍ଣ୍ଣ ହୋଇନାହିଁ ।

ଏକ ଜନମଙ୍ଗଳ ରାଷ୍ଟ୍ରରେ ସାମ୍ବାଦିକମାନେ ଆଜି ବି ସାଧାରଣ ସୁବିଧାରୁ ବଞ୍ଚିତ ହେଉଛନ୍ତି । ଦୁର୍ଘଟଣାରେ ଆହତ ବା ମୃତ୍ୟୁ ହେଲେ ସାମ୍ବାଦିକଟି ଅତି ନଗଣ୍ୟ ସହାୟତା ପାଉଛି, ତାହା ପୁଣି ବାର ଦୁଆର ଅଫିସ୍ ପିଣ୍ଡା ବୁଲିବା ପରେ । ଯଦି କାର୍ଯ୍ୟକ୍ଷେତ୍ରରେ ଦୁର୍ଘଟଣା ଯୋଗୁ ଅକର୍ମଣ୍ୟ ହୋଇଯିବ ତେବେ ତା'ର ସଂସାର ଉଚ୍ଛନ୍ନ ହେବା ନିଶ୍ଚିତ । 'ସାମ୍ବାଦିକତା କଲ୍ୟାଣ ପାଣ୍ଠି' ଗଠନ ହେବାର ଦୀର୍ଘଦିନ ବିତିଗଲେ ମଧ୍ୟ ଅଧିକାଂଶ ସାମ୍ବାଦିକ ଆଜି ବି ଏହି ସୁବିଧାରୁ ବଞ୍ଚିତ ହେଉଛନ୍ତି । ଏପରିକି ପେନ୍‌ସନ୍ ଯୋଜନା ସଂପୂର୍ଣ୍ଣ ଫଳପ୍ରଦ ହୋଇନାହିଁ ।

ସରକାର ସାମ୍ବାଦିକମାନଙ୍କୁ ସରକାରୀ ବାସଗୃହ ଯୋଗାଇବା ଯୋଜନା ଦୀର୍ଘଦିନ ହେଲା ଶୀତଳ ଭଣ୍ଡାରରେ ପଡ଼ି ରହିଛି । ପ୍ରତ୍ୟେକ ବ୍ଲକରେ ଏକ ସାମ୍ବାଦିକ ପ୍ରକୋଷ୍ଠ ଅନ୍ୟ ରାଜ୍ୟରେ ଥିବାବେଳେ ଆମ ରାଜ୍ୟରେ ଏହା ନାହିଁ । ସରକାରୀ କର୍ମଚାରୀମାନଙ୍କୁ ସ୍ୱଳ୍ପ ମୂଲ୍ୟରେ ଇଣ୍ଟରନେଟ୍ ସୁବିଧା ବିଏସ୍‌ଏନ୍‌ଏଲ (BSNL) ଦେଉଥିବାବେଳେ ସାମ୍ବାଦିକମାନଙ୍କୁ ଏହା ମିଳୁ ନାହିଁ । ସମସ୍ତ ସାମ୍ବାଦିକମାନଙ୍କୁ ରାଜ୍ୟ କର୍ମଚାରୀ ବୀମା ନିଗମ (ESI)ର ଚିକିତ୍ସା ସୁବିଧା ମିଳୁ ନାହିଁ ।

ଅନ୍ୟ ପକ୍ଷରେ ସାମ୍ବାଦିକମାନେ ବିଭିନ୍ନ ସଂସ୍ଥାର ଚାପରେ କାମ କରୁଛନ୍ତି । ପ୍ରକୃତ ତଥ୍ୟ ଖୋଲିବାକୁ ହେଲେ ନିଜକୁ ଅସୁରକ୍ଷିତ ମନେ କରୁଛି ସାମ୍ବାଦିକ । ଅତୀତରେ ପୂଜ୍ୟ ରାଧାନାଥ ରଥଙ୍କୁ ମରଣାନ୍ତକ ଆକ୍ରମଣଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଘଟି ଆସିଥିବା ସାମ୍ବାଦିକଙ୍କ ଉପରେ ଆକ୍ରମଣ ମାମଲାରେ ଦୋଷୀଙ୍କୁ ଦୃଷ୍ଟାନ୍ତମୂଳକ ଦଣ୍ଡ ନ ମିଳିବାରୁ ଏହା ଦ୍ରୁତ ଗତିରେ ବଢ଼ି ଚାଲିଛି । ଆମର ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ (ଯାହାକି ସାଧାରଣ ଜନତାର ସ୍ୱରକୁ ସରକାରଙ୍କ ନିକଟରେ ପହଞ୍ଚାଏ) ଆଜି ବିପର୍ଯ୍ୟସ୍ତ ହୋଇପଡୁଛି । ଏହାର ଶହ ଶହ ପ୍ରହରୀ ବଳି ପଡୁଛନ୍ତି କୁଚକ୍ରୀ ଗୋଷ୍ଠୀମାନଙ୍କର ହୀନ ଚକ୍ରାନ୍ତରେ । ତେଣୁ ସରକାର, ବିଭିନ୍ନ ରାଜନୈତିକ ଦଳ, ସ୍ୱେଚ୍ଛାସେବୀ ସଂଗଠନ ସର୍ବୋପରି ଜନସାଧାରଣ ସାମ୍ବାଦିକମାନଙ୍କୁ ସହାୟତା ସହଯୋଗ ଦେଇ ଏକ ଉନ୍ନତ ଗଣତାନ୍ତ୍ରିକ ରାଷ୍ଟ୍ର ଗଠନରେ ସହାୟ ହୁଅନ୍ତୁ ।

ଓର୍ଷକା, ବାଲିଆ, ଭାଗବତପୁର, କେନ୍ଦ୍ରାପଡ଼ା



# ଗଣମାଧ୍ୟମକୁ ଗଣମଧ୍ୟେ ଗଣାଯାଉ

ସୁଶୀଲ୍ ପଣ୍ଡା

ଓଡ଼ିଶାରେ ମାନବ ସମ୍ବଳ ବା ପ୍ରାକୃତିକ ସଂପଦର ଅଭାବ ନାହିଁ । ଅଥଚ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ଅନୁନ୍ନତାର ସ୍ଥିତି ସ୍ଥାପକତା ଜାହିର ରଖିଛି । ବୈଜ୍ଞାନିକ, ସର୍ବଭାରତୀୟସ୍ତରୀୟ ପ୍ରଶାସକ, ଡାକ୍ତର, ଇଞ୍ଜିନିୟର, ସାହିତ୍ୟିକ, କ୍ରୀଡ଼ାବିତ ସୃଷ୍ଟି କରିବାରେ ଓଡ଼ିଶା ପଛୁଆ ନୁହଁ । ହେଲେ ରାଜନୈତିକ ଅପାରଗତା ହେତୁ ରାଜ୍ୟ ଏବେ ଅଧୋଗତିର ଶିକାର ହେଉଛି । ଗଣମାଧ୍ୟମର ନିରପେକ୍ଷ, ନିର୍ଭୀକ, ସାଲିସହୀନ କଲମ ଚାଳନାର ଅଭାବ, ଓଡ଼ିଶା ଅଧୋଗତିର ଅନ୍ୟ ଏକ କାରଣ– କାରଣ ଓଡ଼ିଶା ସମ୍ବାଦପତ୍ରକୁ ବିଭିନ୍ନ ରାଜନୈତିକ ଦଳର ନେତା ବିଶେଷ ନିଜର ମୁଖପତ୍ର ଭାବେ ବ୍ୟବହାର କରୁଛନ୍ତି । କାରଣ ଓଡ଼ିଶାର ୬୦ ଭାଗରୁ ଅଧିକ ସମ୍ବାଦପତ୍ର ରାଜ୍ୟର ରାଜଧାନୀ ଭୁବନେଶ୍ୱରରେ ପ୍ରକାଶିତ ହେଉଛି । ରାଜ୍ୟସ୍ତରରେ ଶତକଡ଼ା ୫ ଭାଗ ପ୍ରମୁଖ ସମ୍ବାଦପତ୍ର ରହିଛି । କାରଣ ସମ୍ବାଦପତ୍ର ଜନିତ ଆୟର ୯୫ ଭାଗ ଏହି ୫ ଭାଗ ପ୍ରମୁଖ ସମ୍ବାଦପତ୍ର ନିଜ ମଧ୍ୟରେ ଭାଗବଣ୍ଟା କରିଥାନ୍ତି ଏବଂ ଆୟର ମାତ୍ର ୫ ଭାଗ ଅନ୍ୟ ୯୫ ପ୍ରତିଶତ ସମ୍ବାଦପତ୍ରକୁ ମିଳିଥାଏ । ଯଦ୍ୱାରା ଦେଶର ଏକମାତ୍ର ରାଜ୍ୟ ଓଡ଼ିଶାରେ ସର୍ବାଧିକ ୨୩ଟି ଭାଷାରେ ସମ୍ବାଦପତ୍ର ପ୍ରକାଶ ପାଉଛି ।

ବୃହତ ଖବରକାଗଜଗୁଡ଼ିକ ସମ୍ବାଦପତ୍ରକୁ ଏକ ଶିଳ୍ପ ରୂପେ ଗ୍ରହଣ କରୁଥିବାରୁ ଏମାନଙ୍କ ଉଦ୍ଦେଶ୍ୟ କେବଳ ଲାଭକୁ ବୁଝାଉଛି । ଏମାନଙ୍କ ସୁନ୍ଦର ମୁଦ୍ରଣ, ରଙ୍ଗୀନ ଚାକଚକ୍ୟ ଅଧିକ ପୃଷ୍ଠାରେ, ଅଧିକ ବିଜ୍ଞାପନ ଓ କମ ସମ୍ବାଦ ରହୁଛି । ଏମାନେ ସଂସ୍କରଣ ଦୃଷ୍ଟିରୁ ଜିଲ୍ଲାସ୍ତରକୁ ଗଲେଣି । ଏହି ସବୁ ସଂସ୍କରଣରେ ସେହି ଅଞ୍ଚଳର ସମ୍ବାଦ ପ୍ରାଧାନ୍ୟ ଦେଇ ଛପାଯାଉଥିବାରୁ ତାହା ଅନ୍ୟ ଅନ୍ୟ ଅଞ୍ଚଳକୁ ଯାଉନି । କ୍ଷୁଦ୍ର ଓ ମଧ୍ୟମ ଖବର କାଗଜ ବଡ଼ କାଗଜ ସହ ତାଳ ଦେବା ପାଇଁ ଚାହିଁଲେ ବଡ଼ କାଗଜ ନିଜର ସଂସ୍କରଣର ମୂଲ୍ୟ କମ୍ କରି ପାଠକ ମହଲକୁ କବ୍‌ଜା କରନ୍ତି । ଏମାନେ ନିଜ କର୍ତ୍ତୃତ୍ୱରେ ଥିବା ଅନ୍ୟ ଶିଳ୍ପ ପାଇଁ ଖବର କାଗଜର ପ୍ରଭାବ ପକାଇ ନିଜର ସ୍ୱାର୍ଥ ସହଜରେ ହାସଲ କରୁଛନ୍ତି ।

ମାତ୍ର କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ବୃଦ୍ଧି ହେଉଥିବାରୁ ଛାପା ମାଧ୍ୟମ କ୍ଷେତ୍ରରେ ଏମାନେ ନିଜର ଉପସ୍ଥିତି ଜାହିର କରୁଛନ୍ତି । ପୁରପଲ୍ଲୀରୁ ସହର ଯାଏଁ ସାଧାରଣ ମଣିଷର ସମସ୍ୟା, ସଂସ୍କୃତି, ସରକାରଙ୍କ ଲୋକହିତକର ଯୋଜନା, ସରକାରୀ କଳର ଅତ୍ୟାଧିକତା ତଥା ଅପରାଧିକ ଘଟଣାର ପ୍ରାକ୍ ଏବଂ ପରବର୍ତ୍ତୀ ସୂଚନା ପ୍ରଦାନରେ ପ୍ରମୁଖ ଭୂମିକା ନିରପେକ୍ଷ ଭାବେ ଉପସ୍ଥାପନା କରୁଛନ୍ତି । ପୁଞ୍ଜିବାଦ ଏମାନଙ୍କୁ ଛୁଉଁନି । ସୂଚନା ପ୍ରଯୁକ୍ତି ଜ୍ଞାନର ଆବିର୍ଭାବ ଓ କ୍ରାନ୍ତିକୁ ଏମାନେ ପ୍ରତିଦ୍ୱନ୍ଦ୍ୱୀ ରୂପେ ଗ୍ରହଣ ନ କରି ଏକ ସହାୟକ ଭାବେ ଗ୍ରହଣ କରି ଏକାଧିକ ସଂସ୍କରଣ, ରଙ୍ଗୀନ କଳେବର, ଆକାର ଓ ସଂଖ୍ୟାରେ ବୃଦ୍ଧି ଘଟାଉଛନ୍ତି । ଟେଲିଭିଜନ, କେବୁଲ ଟେଲିଭିଜନ, ନ୍ୟୁ ମିଡ଼ିଆ ଆଦି ସତ୍ତ୍ୱେ ଏମାନଙ୍କର ଚାହିଦା ଆଞ୍ଚଳିକତା ହେତୁ ସମାଜ ସଂସ୍କାରକ ଭାବେ ପରିଚୟ ପାଉଛି । ଏମାନେ ସ୍ୱୟଂ ସମ୍ପୂର୍ଣ୍ଣ ସାହିତ୍ୟ ସମ୍ବଳିତ, ସାମ୍ବାଦିକତାର ପଥପ୍ରଦର୍ଶକ ଭାବେ ଉଭା ହେଉଛନ୍ତି ।

ମନେପଡ଼େ ୧୮୩୮ରେ ବନ୍ଦ ହୋଇଯାଇଥିବା ରାଜ୍ୟର ପ୍ରଥମ ତାଳପତ୍ର ଲିଖନୀର ଖବର କାଗଜ 'କୁଜୀବର ପତ୍ରିକା' ପରବର୍ତ୍ତୀ ପ୍ରକାଶକମାନଙ୍କ ପାଇଁ ପଥ ସୁଗମ କରିଥିଲା । ପୁଣି ରାଜ୍ୟର ପ୍ରଥମ ସାପ୍ତାହିକ ଓଡ଼ିଆ ପତ୍ରିକା 'ଉତ୍କଳ ଦୀପିକା' ୧୮୬୬ରେ ପ୍ରକାଶିତ ହୋଇଥିଲା । ବ୍ରହ୍ମପୁରରୁ ୧୮୯୩ରେ ପ୍ରକାଶ ପାଇଥିବା ସାପ୍ତାହିକ 'ଆଶା', ୧୯୨୮ରେ 'ଦୈନିକ

ଆଶା' ନାଁରେ ରାଜ୍ୟର ପ୍ରଥମ ଦୈନିକ ସମ୍ବାଦପତ୍ର ହେବାର ଗୌରବ ଅର୍ଜନ କରିଥିଲା । ଏହି ସମୟରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପତ୍ରିକା 'ପୁରୀବାସୀ ସତ୍ୟବାଦୀ' ମଧ୍ୟ ପ୍ରକାଶିତ ହେଲା । ୧୯୧୯ରେ ସ୍ୱାଧୀନତା ଆନ୍ଦୋଳନ କ୍ଷେତ୍ରରେ ସଚେତନତା ଆଣିବା ପାଇଁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା 'ସମାଜ' ସ୍ଥାପିତ ହେଲା । ତତ୍‌ପରେ ୧୯୨୩ରେ ଡକ୍ଟର ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର' ସ୍ଥାପିତ କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ 'ଜନତା' ପ୍ରକାଶ କଲେ । କଳିଙ୍ଗର ବରପୁତ୍ର ବିଜୁ ପଟ୍ଟନାୟକ ମଧ୍ୟ ୧୯୬୦ରେ 'କଳିଙ୍ଗ' ପତ୍ରିକା ପ୍ରତିଷ୍ଠା କଲେ । ଟେଲିଭିଜନ ୧୯୮୨ରେ ଆବିଷ୍କାର ପରେ ସମ୍ବାଦପତ୍ରଗୁଡ଼ିକର ପ୍ରମାଦ ଗଣିବା ଆରମ୍ଭ ହେଲା ।

ସାମ୍ପ୍ରତିକ ପରିସ୍ଥିତିରେ ଓଡ଼ିଶାର ଜନସଂଖ୍ୟା ବ୍ୟବସାୟିକ ପ୍ରତିଷ୍ଠାନ, କଳକାରଖାନା, ଘରଦ୍ୱାର, ରାସ୍ତାଘାଟ, ଯାନବାହନ ଇତ୍ୟାଦିର ଆଶାତୀତ ବୃଦ୍ଧି ଘଟିଥିବାରୁ ବାହ୍ୟ ସଂସ୍କୃତି ଏଠି ପ୍ରବେଶ କରିଛି । ଅରାଜକତା, ଅପରାଧ, ଦୁର୍ନୀତି, ଆକାଶ ଛୁଇଁଛି । ଜୀବନଜୀବିକା, ଆଶା ଆକାଂକ୍ଷା, ଲୋଭଲାଭ, ରାତି ଅଧିଆ ପୂରଣ ପାଇଁ ପ୍ରତିଯୋଗିତା ଚାଲିଛି । ଲୋକଙ୍କ ନୈତିକତାରେ ଅଧୋଗତି ଘଟିଛି । କଞ୍ଚା ଓ ଶୁଖିଲା ଖାଦ୍ୟ ପଦାର୍ଥ, ଔଷଧ ଆଦିରେ ଅପମିଶ୍ରଣ ଜୀବନ ନେଉଛି । ଏପରି ସ୍ଥଳେ ଗଣମାଧ୍ୟମକୁ ସଂଘଟିତ ହେବାକୁ ପଡ଼ିବ । ଶହେ ଶତ୍ରୁ ଓ ଅସ୍ତ୍ର ବିରୁଦ୍ଧେ ହଜାରେ କଲମ ଏକଜୁଟ ହୋଇ ତାଳ ଦେଇ ଚାଲିବାର ସମୟ ଆସିଛି । ପୃଷ୍ଠପୋଷକ ଓ ପ୍ରତିପୋଷଣ

ଉର୍ଦ୍ଧ୍ୱେ ରହି ସମାଜକୁ ଉଦ୍ଧାର କରିବାକୁ ହେବ । ବୁଦ୍ଧି ଓ ଜ୍ଞାନ ମଧ୍ୟେ ଆତ୍ମାକୁ ସଂପନ୍ନ କରିବାକୁ ହେବ । ନକାରାତ୍ମକ, କାମଳ ଓ ମନଗଢ଼ା ଖବରକୁ କବର ଦେବାକୁ ହେବ । ବୌଦ୍ଧିକ ଚେତନା ରୁଚି ସଂସ୍କୃତିକୁ ଆତ୍ମନିର୍ଭରଶୀଳତାରେ ଗଢ଼ିବାକୁ ହେବ । ସମୟ ବିହୁନେ ହଜିଯାଇଥିବା ମଣିଷ ମନର ମନୋରଞ୍ଜନକୁ ଫେରାଇ ଆଣିବାକୁ ପଡ଼ିବ । ସାମର୍ଥ୍ୟ ଅନୁଯାୟୀ ଲକ୍ଷେ ସ୍ୱଚ୍ଛ ଉପାର୍ଜନର ପଥକୁ ଲୋକଲୋଚନକୁ ଆଣିବାକୁ ପଡ଼ିବ । ଅତଏବ, ସର୍ବୋପରି ଗଣମାଧ୍ୟମକୁ ଗଣ ମଧ୍ୟେ ଗଣିଲେ ଗୁଣ ଗାରିମା ଗର୍ଜିବ । ମଣିଷ ପ୍ରକୃତ ପଦବାଚ୍ୟରେ ଆଚରଣଯୁକ୍ତ ହେବ ।

ସମ୍ପାଦକ 'ଅତଏବ'
ବଲାଙ୍ଗୀର



# ଓଡ଼ିଶାର ଗଣମାଧ୍ୟମ

ପଙ୍କଜ କୁମାର ଶତପଥୀ

ସମ୍ପ୍ରତି ଦୂରଦର୍ଶନର ଭିନ୍ନ ଭିନ୍ନ ରୂପ ମୁଦ୍ରିତ ସମ୍ବାଦପତ୍ରକୁ ପଛରେ ପକାଇ ଦେଇଛି । ବିଶେଷ କରି ୨୪ ଘଣ୍ଟିଆ ସମ୍ବାଦ ପ୍ରସାରଣ ଦୈନିକ ସମ୍ବାଦପତ୍ରମାନଙ୍କୁ ଯେଉଁ ଆହ୍ୱାନ ଦେଉଛି ତାହା କେହି ଗ୍ରହଣ କରିପାରୁନାହାନ୍ତି । ଦୈନିକ ସମ୍ବାଦପତ୍ରର 'ଶିରୋନାମା' ସେମାନଙ୍କର ବିସ୍ତୃତ ତଥ୍ୟକୁ ଚୁମ୍ବକରେ ସୂଚାଇ ଦେବା ଦ୍ୱାରା ଅନେକ ପାଠକ ପାଠିକା ତାହାର ବିଶଦ ବିବରଣୀ ପଢ଼ିବା ପାଇଁ ଉଚିତ ମନେ କରୁନାହାନ୍ତି । ପ୍ରତ୍ୟେକ ସମ୍ବାଦପତ୍ରର ଶିରୋନାମା ପାଠକକୁ ଶେଷ ପର୍ଯ୍ୟନ୍ତ ବାନ୍ଧି ରଖିବା ଭଳି Suspensive Title ଉଲ୍ଲେଖ କରିବା ଆବଶ୍ୟକ । ସମ୍ବାଦପତ୍ରମାନେ ସେମାନଙ୍କ ସମ୍ବାଦ ପତ୍ରର 'ବିଭାଗ' ସ୍ୱତନ୍ତ୍ର ଭାବରେ ସୃଷ୍ଟି କରୁନାହାନ୍ତି । ଏହାଦ୍ୱାରା ହାରିଯାଉଥିବା ସମ୍ବାଦପତ୍ରମାନେ ଓଡ଼ିଶାରେ ପ୍ରତିଯୋଗିତାର ବଜାର ସୃଷ୍ଟି କରିପାରନ୍ତେ । ଅବଶ୍ୟ ସାହିତ୍ୟ, କ୍ରୀଡ଼ା, ଚଳଚ୍ଚିତ୍ର, ଦେଶଦୁନିଆର ଖବର, ଆଞ୍ଚଳିକ ଖବର, ଜନମତ ଇତ୍ୟାଦି ସମ୍ବାଦପତ୍ରମାନଙ୍କରେ ସ୍ଥାନ ପାଉଛି । ତଥାପି ଏସବୁ ସାମ୍ପ୍ରତିକ ସମାଜ ପାଇଁ ଯଥେଷ୍ଟ ନୁହେଁ । କାରଣ ଦୃଷ୍ଟାନ୍ତ ସ୍ୱରୂପ 'ଜନମତ'ରେ ଜନତା ଦେଇଥିବା ତଥ୍ୟକୁ ବିରୂପ କରାଯିବା ସହ ଶିରୋନାମା ବଦଳାଇବା ଲୋକଙ୍କ 'ବାକ୍ ସ୍ୱାଧୀନତା'କୁ ଉଲଘଂନ କରୁଛି । ସମ୍ବାଦପତ୍ରମାନେ ରାଜନୀତିରୁ ଉର୍ଦ୍ଧ୍ୱରେ ନ ରହି ଯେଉଁଭଳି ଭିନ୍ନ ଭିନ୍ନ ରାଜନୈତିକ ଦଳ ସପକ୍ଷରେ ଲେଖନୀ ମୁନକୁ ବକ୍ର କରୁଛନ୍ତି ତାହାଦ୍ୱାରା ବିପକ୍ଷ ଦଳର ପାଠକମାନେ ସଂପୃକ୍ତ ସମ୍ବାଦପତ୍ରକୁ ନିର୍ଦ୍ଦିଷ୍ଟ ଏକ ଦଳର ସମ୍ବାଦପତ୍ର ରୂପେ ବିବେଚନା କରିବା ଦ୍ୱାରା ଓଡ଼ିଶାରେ ରାଜନୈତିକ ପ୍ରଦୂଷଣ ଓ ଗୋଷ୍ଠୀ ବିବାଦ ବୃଦ୍ଧି ପାଉଛି ।

ଅନେକ ସମ୍ବାଦପତ୍ର ପ୍ରକୃତ ଗୃହହୀନ, ବସ୍ତ୍ରହୀନ, ବେକାରୀ, ଅଶ୍ଳୀଳ କାହାଣୀ, ଗୁପ୍ତ ପ୍ରତିଭା, ଲୋକଙ୍କ ଦାବୀ ଓ ଅଧିକାର, ରୋମାଞ୍ଚକର ତଥ୍ୟ, ଲୋକଙ୍କ ସମସ୍ୟା, ଆବଶ୍ୟକତା ଏବଂ ଅଭିଯୋଗକୁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଇବା ଦିଗରେ ଉଚିତ ପଦକ୍ଷେପ ନେଉ ନାହାନ୍ତି । ଯଦ୍ୱାରା ଅନେକ ସର୍ବହରା ସେମାନଙ୍କର ମୌଳିକ ଅଧିକାରରୁ ମଧ୍ୟ ବଞ୍ଚିତ ହେଉଛନ୍ତି । ଅନେକ ସମ୍ବାଦପତ୍ରର ସାମ୍ବାଦିକ ଲୋକମାନଙ୍କ ନିକଟବର୍ତ୍ତୀ ହୋଇ ସେମାନଙ୍କର ସମସ୍ୟା ଓ ଆବଶ୍ୟକତାକୁ ନୂତନ ରୂପ ଦେଇ ନୂତନ ଦୃଷ୍ଟାନ୍ତ ସୃଷ୍ଟି କରାଇବା ଉଚିତ୍ ।

ଓଡ଼ିଶାରେ R.N.I ପାଇଥିବା ସମ୍ବାଦପତ୍ରମାନେ ଓଡ଼ିଶାରେ ସାମ୍ରାଜ୍ୟ ବିସ୍ତାର ନ କରି କେବଳ Advertisement ଆଶାରେ ରାଜଧାନୀ ଭୁବନେଶ୍ୱରକୁ ଜାବୁଡ଼ି ଧରିବା ଓଡ଼ିଶାର ଦୁର୍ଭାଗ୍ୟ । ଅବଶ୍ୟ କେତେକ ସମ୍ବାଦପତ୍ର ନିଜ ନିଜ ଅଞ୍ଚଳରେ କାୟା ବିସ୍ତାର କଲାବେଳେ ଅନ୍ୟ କେତେକ 'ଧ୍ରୁବତାରା' ଭଳି ପ୍ରଭାତ ଆକାଶରେ ଆସି ସୂର୍ଯ୍ୟୋଦୟ ପୂର୍ବରୁ ଆକାଶ ବୁକୁରେ ଲୁଚି ଯାଉଛନ୍ତି ।

Classified Advertisement କ୍ଷେତ୍ରରେ ଅନେକ ସମ୍ବାଦପତ୍ର ଯେଉଁ ଦର ରଖୁଛନ୍ତି ତାଦ୍ୱାରା ବହୁ ଉଦ୍ୟୋଗୀ ଅଳ୍ପ ପଇସାରେ ଜୀବନ ଧାରଣର ମାର୍ଗ ହରାଉଛନ୍ତି । ଏ କ୍ଷେତ୍ରରେ ପ୍ରତ୍ୟେକ ସମ୍ବାଦପତ୍ରରେ ସମାନତା ରହିବା ଆବଶ୍ୟକ ।

ଓଡ଼ିଶାରେ ଅନେକ ଗୁପ୍ତ ପର୍ଯ୍ୟଟନ କ୍ଷେତ୍ର ରହିଥିଲେ ସୁଦ୍ଧା କେବଳ ପ୍ରତିଷ୍ଠିତ ପର୍ଯ୍ୟଟନ କ୍ଷେତ୍ରର ପ୍ରଚାର ସମ୍ବାଦପତ୍ର ପକ୍ଷରେ ସ୍ପୃହଣୀୟ ନୁହେଁ ।

ସମ୍ବାଦପତ୍ରମାନେ ଛାତ୍ରଛାତ୍ରୀମାନଙ୍କୁ ଦେଉଥିବା ମେଧା ବୃତ୍ତିରେ ବି.ପି.ଏଲ୍ କିମ୍ବା ତହସିଲଦାରଙ୍କଠାରୁ ବାର୍ଷିକ ଆୟ ପ୍ରମାଣପତ୍ର ମାଗିବା ଆଇନସଙ୍ଗତ ସତ୍ତ୍ୱେ ଯାହାର

ବି.ପି.ଏଲ ନାହିଁ କିମ୍ବା ଯିଏ ଗୃହହୀନ (ଭଡାଟିଆ) ସେ ଏଥିରୁ ବଞ୍ଚିତ ହେଉଛି ।

ଆମ ସମାଜରେ ଯୌତୁକ ପ୍ରଥା ଉଚ୍ଛେଦ ସାମ୍ପ୍ରତିକ ସମୟରେ ସମ୍ଭବ ନୁହେଁ । ତେଣୁ ଅତୀତରେ ବିଜୁ ପଟ୍ଟନାୟକ ଯୌତୁକ ଅର୍ଥ ଟ ୨୫,୦୦୦ଙ୍କା ମଧ୍ୟରେ ସୀମିତ ରଖିଥିଲେ । ସମ୍ପ୍ରତି ଯୌତୁକ ଅଭାବରୁ ବହୁ ଗରିବ ଝିଅ ବାହା ହୋଇ ପାରୁ ନାହାନ୍ତି । ଏଣୁ ସମ୍ବାଦପତ୍ରମାନେ ଏଥି ନିମନ୍ତେ 'ସ୍ୱତନ୍ତ୍ର ରିଲିଫ୍ ପାଣ୍ଠି'ର ବ୍ୟବସ୍ଥା ରଖିବା ସହ ସରକାରଙ୍କ ରିଲିଫ୍ ପାଣ୍ଠିରେ ଏହି ବ୍ୟବସ୍ଥାକୁ ସ୍ଥାନ ଦେଲେ ବହୁ ଗରିବ ଝିଅଙ୍କ ସ୍ୱପ୍ନ ସତ୍ୟରେ ପରିଣତ ହେବ ।

ଓଡ଼ିଶାର ସହରମାନଙ୍କରେ ରହୁଥିବା ଭଡ଼ାଟିଆ ମାନଙ୍କ ପାଇଁ ସମ୍ବାଦପତ୍ରମାନେ ସ୍ୱତନ୍ତ୍ରଭାବେ ସର୍ଭେ କରି ଖାଲିଥିବା ଘର, ଭଡ଼ା ଏବଂ ଚୁକ୍ତି ବିଷୟରେ ଅବଗତ କରାଇବା ଆବଶ୍ୟକ । ଏହାଦ୍ୱାରା ଘର ଖଣ୍ଡିଏ ପାଇଁ ତ୍ରାହି ତ୍ରାହି ଡାକୁଥିବା ଭଡ଼ାଟିଆମାନେ ସମ୍ବାଦପତ୍ରର ଗ୍ରାହକ ଭୁକ୍ତ ଓ ରେଜିଷ୍ଟ୍ରେସନ ଚାର୍ଜ ବିନିମୟରେ ଘର ପାଇବା ସହଜସାଧ୍ୟ ହୁଅନ୍ତା ।

ସାମ୍ପ୍ରତିକ ସମୟର ବ୍ୟବସାୟିକ ଶିକ୍ଷାଯୋଜନା, ଗଛକଟା ଅଭିଯାନ, ସହରର ଗୃହହୀନ ଭଡ଼ାଟିଆଙ୍କୁ ବିସ୍ଥାପନ ନୀତି ଜରିଆରେ ଥଇଥାନ କରିବା, ୪୦%ରୁ ଉର୍ଦ୍ଧ୍ୱ ଛାତ୍ରଛାତ୍ରୀଙ୍କୁ ସେମାନଙ୍କ ସ୍ୱପ୍ନ ପୂରଣ ପର୍ଯ୍ୟନ୍ତ ଅନେକ ପ୍ରସଙ୍ଗ ସମ୍ବାଦପତ୍ରର ଶିରୋନାମା ମଣ୍ଡନ କରୁନାହିଁ ।

ସାମ୍ପ୍ରତିକ ପରିସ୍ଥିତିରେ ଓଡ଼ିଶାର ଗଣମାଧ୍ୟମ ମଧ୍ୟରେ ସମ୍ବାଦପତ୍ରମାନେ କିଭଳି ତିଷ୍ଠି ରହି ଜନସ୍ୱାର୍ଥ ପାଇଁ ବଳିଦାନ ଦେବେ, ତାହା ହିଁ ଏହି ଲେଖାର ମୂଳଲକ୍ଷ୍ୟ ।

ପ୍ଲଟ୍ ନଂ. -୨୭୦, ନବକଳେବର ରୋଡ୍,
ପୁରୀ-୨



# ଓଡ଼ିଶାର ଗଣମାଧ୍ୟମ ଓ ଜନଚେତନା

ବାଇଧର ଚାନ୍ଦ

ସାମ୍ବିଧାନିକ ବିଧିବ୍ୟବସ୍ଥା ଅନୁଯାୟୀ ଭାରତ ୧୯୫୦ ଜାନୁୟାରୀ ୨୬ତାରୁ ସାର୍ବଭୌମ ଗଣତାନ୍ତ୍ରିକ-ରାଷ୍ଟ୍ରରୂପେ ସର୍ବତ୍ର ପୃଥିବୀରେ ପରିଚିତ ହେଲା । ଗଣତନ୍ତ୍ର ଶାସନର ଆଇନ୍ ଖସଡ଼ା ଅନୁଯାୟୀ ଜନସାଧାରଣଙ୍କ ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ଆଇନ୍ ଶୃଙ୍ଖଳା ରକ୍ଷା, ନିରାପଦରେ ଜନସାଧାରଣଙ୍କ ରହଣୀ ଓ ସ୍ୱଚ୍ଛନ୍ଦ ଜୀବନଯାପନ ନିମନ୍ତେ ବ୍ୟବସ୍ଥାପକ, ଶାସନ ଓ ବିଚାର ବିଭାଗ ସାଙ୍ଗକୁ ଚତୁର୍ଥ ସ୍ତମ୍ଭ ରୂପେ ବିବେଚିତ ହେଉଥିବା ସ୍ୱାଧୀନ ଗଣମାଧ୍ୟମ ବ୍ୟବସ୍ଥା ରହିଲା । ସମଗ୍ର ଦେଶର ୨୮ଟି ରାଜ୍ୟ ଓ ୭ଟି କେନ୍ଦ୍ରଶାସିତ ଅଞ୍ଚଳରେ ଥିବା ପୃଥିବୀର ସର୍ବ ବହୁଳ ସାବାଳକ ମତଦାନରେ ପ୍ରତ୍ୟକ୍ଷ ପ୍ରତିନିଧି ନିର୍ବାଚନ ଦ୍ୱାରା କେନ୍ଦ୍ର ସରକାର ପ୍ରତିଷ୍ଠା କରାଗଲା । ସଂଘୀୟ ରାଷ୍ଟ୍ର ବ୍ୟବସ୍ଥା ଅନୁଯାୟୀ ପ୍ରତ୍ୟେକ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ ଅନୁରୂପ ଶାସନ ବ୍ୟବସ୍ଥା ଅନୁସୃତ ହେଲା । ସାମ୍ପ୍ରତିକ ପରିସ୍ଥିତିରେ ଆମ ରାଜ୍ୟ ଓଡ଼ିଶାର ବ୍ୟବସ୍ଥାପକ, ଶାସନ ଓ ବିଚାର ବିଭାଗ ସହିତ ଗଣମାଧ୍ୟମର ପ୍ରତିଫଳନ ଜନସାଧାରଣଙ୍କ ସେବା ନିମନ୍ତେ ଉଦ୍ଦିଷ୍ଟ । କାରଣ ବର୍ତ୍ତମାନର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅସ୍ଥିରତାର ସନ୍ତୁଳନ ନିମନ୍ତେ ଗଣମାଧ୍ୟମ ପ୍ରତିନିଧିଙ୍କ ନୈତିକ କର୍ତ୍ତବ୍ୟ ରାଜ୍ୟକୁ ନୂତନ ଦିଗ୍‌ଦର୍ଶନ ଦେବାରେ ସହାୟକ ହେବ ।

ଦେଶରେ ଗଣତନ୍ତ୍ର ଶାସନର ପ୍ରାରମ୍ଭରୁ ଅଦ୍ୟାବଧି ସମୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ତିନି ଦଶନ୍ଧିର ପ୍ରାରମ୍ଭ କାଳରେ ଓଡ଼ିଶା ଏକ ଅନଗ୍ରସର ରାଜ୍ୟଭାବେ ପରିଚିତ ଥିଲା । ତତ୍କାଳୀନ ଅବସ୍ଥାରେ ଓଡ଼ିଶା ବହୁ ସମସ୍ୟା ମଧ୍ୟରେ ଗତି କରୁଥିଲା । ସାମାଜିକ ସ୍ତରରେ ଜାତି ଭେଦ, ବାଲ୍ୟବିବାହ, ନିରକ୍ଷରତା, ସାମ୍ପ୍ରଦାୟିକତା, କୁସଂସ୍କାର, ଅନ୍ଧବିଶ୍ୱାସ, ବନ୍ୟା ବାତ୍ୟା ମରୁଡ଼ିଜନିତ ଖାଦ୍ୟାଭାବ ଗମନାଗମନ ଓ ପରିବହନର ଅସୁବିଧା, ଅନୁନ୍ନତ ପାରମ୍ପରିକ ଚାଷ ପ୍ରଣାଳୀର ପ୍ରୟୋଗ ଓ ନ୍ୟୁନ ପରିମାଣର ଖାଦ୍ୟ ଶସ୍ୟ ଉତ୍ପାଦନ ଆଦି ବହୁବିଧ ଅସୁବିଧାର ସମ୍ମୁଖୀନ ହୋଇଥିଲା । ଏସବୁର ଦୂରୀକରଣ ଦିଗରେ ସରକାରୀ କାର୍ଯ୍ୟକ୍ରମ ସାଙ୍ଗକୁ ଗଣମାଧ୍ୟମର ପ୍ରତିନିଧିମାନେ ଯେପରି ଭାବରେ ପ୍ରତ୍ୟେକ ଘଟଣାକୁ ଲୋକ ଲୋଚନକୁ ଆଣିଲେ ଓ ସରକାରୀକଳକୁ ପ୍ରେରଣ କରି ସଚେତନ କରାଇଲେ, ତାହା ରାଜ୍ୟ ପ୍ରଗତିରେ ଏକ ମୁଖ୍ୟ ଭୂମିକା ଗ୍ରହଣ କଲା । ଅବଶ୍ୟ ଏହା ନିଛକ ସତ୍ୟ ଯେ ତତ୍କାଳୀନ ଅବସ୍ଥାରେ ହାତଗଣତି କେତୋଟି ଦୈନିକ ଖବରକାଗଜ ସାପ୍ତାହିକ ଓ ପାକ୍ଷିକ ପତ୍ରିକା ସାଙ୍ଗକୁ ରେଡ଼ିଓ ଗଣମାଧ୍ୟମର ପ୍ରଧାନ ଉପାଦାନ ଥିଲା ।

ସେ ସମୟରେ ସ୍ୱର୍ଗତ ଗୋପବନ୍ଧୁ ଓ ମଧୁସୂଦନଙ୍କ ନୀତି ଆଦର୍ଶର ସ୍ରୋତ ସମଗ୍ର ରାଜ୍ୟରେ ପ୍ରବାହିତ ହେଉଥିଲା । ଏଣୁ ଓଡ଼ିଆ ଗଣମାଧ୍ୟମର ପ୍ରତିନିଧିଗଣ ନିଃସ୍ୱାର୍ଥପର ଜନସେବା ଓ ହିତାକାଂକ୍ଷୀ ଭାବେ ଓଡ଼ିଆ ଜାତିକୁ ଜାଗ୍ରତ କରିବାରେ ବ୍ରତୀ ଥିଲେ । ୧୯୮୦ ପରବର୍ତ୍ତୀ ସମୟରୁ ଅଦ୍ୟାବଧି ଖବରକାଗଜ, ପତ୍ରପତ୍ରିକା, ରେଡ଼ିଓ ବ୍ୟତୀତ ଟେଲିଭିଜନ ଓ ଇଣ୍ଟରନେଟ୍‌ର ସୁବିଧା ପ୍ରଚାର ଓ ପ୍ରସାର ଦିଗରେ ଅଧିକ ସହାୟକ ହେଲା ।

ଓଡ଼ିଶାର ପ୍ରାୟ ୮୦% ଅଞ୍ଚଳ ଜଙ୍ଗଲ ପାହାଡ଼ରେ ପରିପୂର୍ଣ୍ଣ ଓ ଗ୍ରାମାଞ୍ଚଳରେ ଅବସ୍ଥିତ । ପଲ୍ଲୀ ଅଞ୍ଚଳର ପ୍ରାୟ ତିନି ଚତୁର୍ଥାଂଶ ଲୋକ ଚାଷ ଓ ମୂଲମଜୁରି ଉପରେ ନିର୍ଭରଶୀଳ । ସାମ୍ପ୍ରତିକ ପରିପ୍ରେକ୍ଷୀରେ କୃଷି ବାଣିଜ୍ୟ, ଗମନାଗମନ ଓ ପରିବହନ, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଜଳସେଚନରେ ଆଶାନୁରୂପ ପ୍ରଗତି ହୋଇଛି । ବିଶେଷ କରି ଜଙ୍ଗଲ ଓ ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା ଆଦିବାସୀମାନେ ପ୍ରତ୍ୟେକ କ୍ଷେତ୍ରରେ ଅଦ୍ୟାବଧି ଆଶାନୁରୂପ ପ୍ରଗତି ହାସଲ କରିବେ ।

ଜନଜୀବନର ଜୀବିକା ରୁଚି ଆଭିମୁଖ୍ୟ ଓ ଅଧୁନା ପରିସ୍ଥିତିର ସମସ୍ୟାଗୁଡ଼ିକୁ ଲୋକ ଲୋଚନକୁ ଆଣିବା ଗଣମାଧ୍ୟମ ପ୍ରତିନିଧିଙ୍କ ପ୍ରଧାନ କର୍ତ୍ତବ୍ୟ । ଏତଦ୍‌ଭିନ୍ନ ଆଧୁନିକ ସମାଜର ଜଟିଳ ସମସ୍ୟା ଯଥା–ସନ୍ତ୍ରାସବାଦ, ଆତଙ୍କବାଦ, ଯୌତୁକ ପ୍ରଥା ଭଳି ସାମାଜିକ କଳଙ୍କ ଓ ଏଥିପାଇଁ ଘଟୁଥିବା ବଧୂହତ୍ୟା, ଯୌନ ନିର୍ଯ୍ୟାତନା, ରାହାଜାନୀ, ଅପହରଣ, ପରିବେଶ ପ୍ରଦୂଷଣ ସଡ଼କ ଦୁର୍ଘଟଣା, ବନ୍ୟା ବାତ୍ୟା ପରି ଦୈବୀ ଦୁର୍ବିପାକ ଓ ଛାତ୍ର ବିଶୃଙ୍ଖଳା ପ୍ରାଧାନ୍ୟ ଲାଭ କରିଛି । ସାମ୍ପ୍ରତିକ କାଳରେ ଗଣମାଧ୍ୟମର କାର୍ଯ୍ୟ ବହୁକ୍ଷେତ୍ରରେ ପ୍ରଶଂସିତ ହେଉଛି । ଖବର କାଗଜ, ପତ୍ରପତ୍ରିକା, ରେଡ଼ିଓ ବ୍ୟତୀତ ଟେଲିଭିଜନ ଓ ଇଣ୍ଟରନେଟ୍ ବ୍ୟବହାର ଫଳରେ ବାର୍ତ୍ତା ପହଞ୍ଚିବାର ସମୟର ବ୍ୟବଧାନ ହ୍ରାସ ପାଇଛି । ଘଟଣାଟିଏ ଘଟିବାର ସଙ୍ଗେ ସଙ୍ଗେ ସଠିକ୍ ସମ୍ବାଦ ଦୃଶ୍ୟ ଶ୍ରାବ୍ୟ କିମ୍ବା ପଠନ ମାଧ୍ୟମରେ ତତ୍‌କ୍ଷଣାତ୍ ହସ୍ତଗତ ହେଉଛି । ଗତ ବାତ୍ୟାର ବିଭୀଷିକା ଚିତ୍ର କିଛି ଗଣମାଧ୍ୟମ ପ୍ରତିନିଧି ନିଜ ଜୀବନକୁ ବାଜିଲଗାଇ ସଙ୍ଗେ ସଙ୍ଗେ ଟିଭି ମାଧ୍ୟମରେ ପ୍ରେରଣ କରିବା ଫଳରେ ବିପନ୍ନଙ୍କ ନିକଟରେ ସରକାର ତଥା ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ଖାଦ୍ୟପାନୀୟ ଔଷଧ ଆଦି ସାମଗ୍ରୀ ଯଥା ସମୟରେ ପହଞ୍ଚି ପାରିଥିଲା ଓ ନିଶ୍ଚିତ ବିପଦମୁଖରୁ ଉଦ୍ଧାର କରାଯାଇ ପାରିଥିଲା । ସମଗ୍ର ରାଜ୍ୟର ସ୍ଥାନେ ସ୍ଥାନେ ମାଓବାଦୀଙ୍କ ଦୌରାତ୍ମ୍ୟ, ଗୁଣ୍ଡାରାଜ ଓ ଏପରିକି ଦୁର୍ନୀତିର ଘଟଣାବଳୀ ଗଣମାଧ୍ୟମ ଦ୍ୱାରା ହିଁ ସଙ୍ଗେ ସଙ୍ଗେ ଜାଣି ହେଉଛି ଓ ତତ୍‌କ୍ଷଣାତ୍ ସରକାରଙ୍କ ଦ୍ୱାରା ପ୍ରତିଷେଧକ ବ୍ୟବସ୍ଥା ନିର୍ଣ୍ଣୟ କରାଯାଉଛି । ତୁଳନାତ୍ମକ ଭାବେ ଦେଖିଲେ ଅନ୍ୟ ତିନିସ୍ତମ୍ଭର କାର୍ଯ୍ୟ ତୁଳନାରେ ଚତୁର୍ଥ ସ୍ତମ୍ଭର କାର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କିନ୍ତୁ ପରିତାପର ବିଷୟ ନାନାବିଧ କାରଣରୁ ଗଣମାଧ୍ୟମ ପ୍ରତିନିଧିମାନେ ବହୁ ଜନହିତୈଷୀ କାର୍ଯ୍ୟ ସେମାନଙ୍କ ନିକଟରେ କରିବାକୁ ଥିଲେ ମଧ୍ୟ ବିଭିନ୍ନ କାରଣରୁ କରିବାରେ ଅସମର୍ଥ ହୁଅନ୍ତି । କିଛି ଗଣମାଧ୍ୟମ ସଂସ୍ଥା ନିର୍ଭରଯୋଗ୍ୟ ନିରପେକ୍ଷ ଓ ସତ୍ୟ ଉପରେ ଆଧାରିତ ସମ୍ବାଦ ପ୍ରେରଣ କରୁଥିବା ବେଳେ କେତେକ ଘଟଣାର କିଛି ଅଂଶ ଆବୃତ ରଖି ସମ୍ବାଦ ପ୍ରେରଣ କରିଥାନ୍ତି । ଏହାର ନାନାବିଧ କାରଣ ଥାଇପାରେ । କୌଣସି ରାଜନୈତିକ ଦଳର ପକ୍ଷ ସମର୍ଥନ, ପ୍ରଭାବଶାଳୀ ବ୍ୟକ୍ତିକୁ ତୋଷିବା ଅଥବା ଅର୍ଥର ଲାଳସା ଭଳି କାରଣ ଥାଇପାରେ ବୋଲି ମନରେ ସନ୍ଦେହ ଉପୁଜେ ।

ଗଣମାଧ୍ୟମ ପ୍ରତିନିଧିମାନେ ସହରାଞ୍ଚଳ କିମ୍ବା ଅର୍ଦ୍ଧ ସହରାଞ୍ଚଳରେ ବାସ କରିବା ପରିଲକ୍ଷିତ ହୁଏ । ସମ୍ବାଦ ସଂଗ୍ରହ ଉଦ୍ଦେଶ୍ୟରେ କାଁ ଭାଁ ଗାଁଗଣ୍ଡା ବା ଜଙ୍ଗଲ ଅଞ୍ଚଳକୁ ଯାଆନ୍ତି । ଲୋକମାନଙ୍କ ସମସ୍ୟା ସମ୍ପର୍କରେ ଧ୍ୟାନ ଦେବାକୁ ବିଶେଷ ଆଗ୍ରହ ପ୍ରକାଶ କରି ନ ଥାନ୍ତି । ଫଳରେ ନିର୍ଯାତିତ ଲୋକର ସମସ୍ୟା ଲୋକଲୋଚନକୁ ଆସିପାରେ ନାହିଁ । ମଫସଲ ଅଞ୍ଚଳର କୃଷକମାନେ ଫସଲ ବୀମା କରିଥିଲେ ମଧ୍ୟ ସମ୍ମୁଖୀନ ହୋଇଥିବା ବନ୍ୟା ବାତ୍ୟା ମରୁଡ଼ିର ଦୁର୍ଦ୍ଦଶାରୁ କ୍ଷତିପୂରଣ ପାଇବା ଅସମ୍ଭବ ହୁଏ । କାରଣ ତାଙ୍କ ଦୁଃଖ ଦୁର୍ଦ୍ଦଶା ସାମ୍ବାଦିକ କିମ୍ବା ସରକାରଙ୍କ ନିକଟରେ ପହଞ୍ଚି ପାରେ ନାହିଁ ।

ଅଧିକାଂଶ ଗଣମାଧ୍ୟମ ପ୍ରତିନିଧି ସ୍ୱାର୍ଥ ଲାଳସାରେ ବଶବର୍ତ୍ତୀ ହୋଇ ରାଜନୈତିକ ଦଳ ଅଥବା ବ୍ୟକ୍ତି ବିଶେଷଙ୍କ ସ୍ତବ ପାଠ କରୁଛନ୍ତି । ଦେଖାଯାଉଛି ସହର ବଜାରରେ କିମ୍ବା ରାଜଧାନୀରେ ସରକାରୀ ଓ ବେସରକାରୀ କାର୍ଯ୍ୟକ୍ରମରେ ଯେପରି ଭାବେ ଗଣମାଧ୍ୟମ ପ୍ରତିନିଧି ସମ୍ବାଦ ଗ୍ରହଣ ନିମିତ୍ତ ଭିଡ଼ିଓ କାମେରା ଧରି ଭିଡ଼ ଜମାନ୍ତି ମଫସଲ ଅଞ୍ଚଳର ଗଣସମସ୍ୟା ଉପସ୍ଥାପନ ନିମନ୍ତେ ତାର ଏକ ଦଶମାଂଶଙ୍କର ଦର୍ଶନ ମିଳେ ନାହିଁ ।

ଓଡ଼ିଶା ଏକ ସମସ୍ୟା ବହୁଳ ରାଜ୍ୟ । ଅର୍ଦ୍ଧାଧିକ ଜନସାଧାରଣ ଦେଶର ଗଣତନ୍ତ୍ର ଶାସନର ପ୍ରଣାଳୀ ସମ୍ବନ୍ଧରେ ଅବଗତ ନୁହନ୍ତି । ଏପରିକି ସମ୍ବିଧାନ ସ୍ୱୀକୃତ ମୌଳିକ ଅଧିକାର ସମ୍ବନ୍ଧରେ ଅନଭିଜ୍ଞ । ଏଣୁ ନିଜର ନାର୍ଯ୍ୟ ଅଧିକାରକୁ ବଳଶାଳୀ ଓ କୌଶଳୀ ଅପହରଣ କରେ । ରାସ୍ତାରେ ଗାଡ଼ି ମଟରରେ ଯିବାବେଳେ ଯେ କେହି ମଧ୍ୟ ଉପଲବ୍ଧି କରିଥିବେ । ନିକଟ ଅତୀତରେ ପ୍ରେଟ୍ରୋଲ, ଡିଜେଲ ଦର ସାମାନ୍ୟବୃଦ୍ଧି ପାଇବା ଫଳରେ ବସ୍ କଣ୍ଡକ୍ଟରମାନେ ଲୋକଙ୍କଠାରୁ ସରକାର ବସ୍ ଭଡ଼ା ବୃଦ୍ଧି ନ କରିଥିବା ସ୍ଥଳେ ଲୋକଙ୍କଠାରୁ ମନଇଚ୍ଛା ୨୦%ରୁ ୩୦% ପର୍ଯ୍ୟନ୍ତ ଆଦାୟ କଲେ । କେହି ସଚେତନ ଯାତ୍ରୀ ପ୍ରତିବାଦ କଲେ ଗାଡ଼ିରୁ ଓହ୍ଲାଇ ଦେବାର ନମୁନା ରହିଛି । ତତ୍କାଳିନ ପରିସ୍ଥିତିରେ ଗଣମାଧ୍ୟମ ପ୍ରତିନିଧି ଗମନାଗମନ ନିମନ୍ତେ ଗାଡ଼ିମଟର ସାହାଯ୍ୟ ନେଇଥିବେ । ଏ ସମସ୍ୟା ନିଜେ ମଧ୍ୟ ହୃଦୟଙ୍ଗମ କରିଥିବେ । କିନ୍ତୁ ଏସବୁ ସମସ୍ୟା ଗଣମାଧ୍ୟମରେ ପ୍ରକାଶିତ ନ ହେବା ଯୋଗୁଁ ସମୂହ ଯାତ୍ରୀ ଦୁଃଖ ଭୋଗ କରୁଛନ୍ତି ।

୧୯୭୫–୭୬ ଜରୁରିକାଳୀନ ଶାସନ ସମୟରେ ଟାଉନ୍ ବଜାର ପ୍ରତ୍ୟେକ ସ୍ଥାନର ହୋଟେଲମାନଙ୍କରେ ଖାଦ୍ୟ ଦର ତାଲିକା ଲିପିବଦ୍ଧ ଥିଲା । ଉପଭୋକ୍ତା ତାର ଆର୍ଥିକ ସାମର୍ଥ୍ୟ ଅନୁଯାୟୀ ଖାଦ୍ୟ ଗ୍ରହଣ କରି ମୂଲ୍ୟ ପୈଠ କରି ଫେରୁଥିଲା । ଫଳତଃ ଗ୍ରାମାଞ୍ଚଳରୁ ସହରାଞ୍ଚଳକୁ କାର୍ଯ୍ୟ ନିମନ୍ତେ ଯାଉଥିବା ବ୍ୟକ୍ତି ଖାଦ୍ୟ

ସାମଗ୍ରୀ ଦାମ ମନଇଚ୍ଛା ନେବା ଦୁର୍ଦ୍ଦଶାରେ ପତିତ ହୁଅନ୍ତି । ଏହିପରି ଅନେକ ସମସ୍ୟା ଗଣମାଧ୍ୟମ ପ୍ରତିନିଧିଙ୍କ ଦୃଷ୍ଟିଗୋଚରକୁ ଆସୁଥିଲେ ମଧ୍ୟ ଏଗୁଡ଼ିକ ପ୍ରତି ଧ୍ୟାନ ରହେ ନାହିଁ ।

ଜଣେ ଗଣମାଧ୍ୟମ ପ୍ରତିନିଧି ରାଜ୍ୟର ଯେକୌଣସି କୋଣ ଅନୁକୋଣରେ ଥାଉନା କାହିଁକି ସର୍ବସାଧାରଣ ସମସ୍ୟାକୁ ଗଣମାଧ୍ୟମରେ ଅବଗତ କରାଇଲେ ସରକାର ସଚେତନ ହେବେ ଓ ଜନସାଧାରଣଙ୍କ ହିତ ଉଦ୍ଦେଶ୍ୟରେ କାର୍ଯ୍ୟପନ୍ଥା ଧାର୍ଯ୍ୟ କରିବେ । ବର୍ତ୍ତମାନ ପରିପ୍ରେକ୍ଷୀରେ ଘଟୁଥିବା ଘଟଣାବଳୀ ଯେ ଗଣମାଧ୍ୟମରେ ପ୍ରକାଶ ପାଉ ନାହିଁ ଏ କଥା ଅସ୍ୱୀକାର କରାଯାଇ ନ ପାରେ । ମାତ୍ର ଘଟୁଥିବା ଘଟଣାବଳୀର ୫୦% ରୁ କମ୍ ସମ୍ବାଦ ଗଣମାଧ୍ୟମରେ ପ୍ରକାଶିତ ହେଉଛି । ଫଳତଃ ସରକାରଙ୍କ ଅଜ୍ଞାତରେ ରହିବା ହେତୁ ଉଚିତ ସମୟରେ ବିହିତ ପଦକ୍ଷେପ ନେଇପାରନ୍ତି ନାହିଁ ।

ସାମ୍ବିଧାନିକ ଶାସନ ବ୍ୟବସ୍ଥାର ସୁପରିଚାଳନା ପାଇଁ ଗଣମାଧ୍ୟମ ଦେଶ ବା ରାଜ୍ୟର ଜାଗ୍ରତ ପ୍ରହରୀ ସଦୃଶ । ଗଣମାଧ୍ୟମ ପ୍ରତିନିଧି ଜନସାଧାରଣଙ୍କ ସୁଖଦୁଃଖ ସମସ୍ୟାର ଦର୍ପଣ ସଦୃଶ । ସେମାନଙ୍କ ଦ୍ୱାରା ହିଁ ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କ ସମସ୍ୟା ପ୍ରତିଫଳିତ ହୋଇ ଜନମାନସକୁ ଆସିଥାଏ । ଗଣମାଧ୍ୟମ ପ୍ରତିନିଧି ଯଦି ନିଃସ୍ୱାର୍ଥପର, ସତ୍ୟବାଦୀ, ନିରହଙ୍କାର ଓ କଷ୍ଟସହିଷ୍ଣୁ ବ୍ୟକ୍ତିତ୍ୱ ନ ହୁଏ, ତେବେ ଗଣତନ୍ତ୍ର ଶାସନର ଚତୁର୍ଥ ସ୍ତମ୍ଭ ଭୁଷୁଡ଼ି ପଡ଼ିବା ସାଙ୍ଗେ ସାଙ୍ଗେ ଗଣମାଧ୍ୟମ କାର୍ଯ୍ୟର ଅସ୍ତମିତ ହେବ । ସରକାରୀ କଳ ହେଉ ବା ଅମଲାତନ୍ତ୍ରୀ ହେଉ ନେତା ଅଥବା ପ୍ରଭାବଶାଳୀ ବ୍ୟକ୍ତି ହୁଅନ୍ତୁ ଗଣମାଧ୍ୟମ ଅଭାବରେ ସେମାନଙ୍କ ଦୁର୍ନୀତି ଲୋକଲୋଚନକୁ ଆସିପାରିବ ନାହିଁ କିମ୍ବା କୃତକର୍ମ ପାଇଁ ବିଚାରାଳୟରେ ଦଣ୍ଡିତ ହେବେ ନାହିଁ । ସମାଜରେ ଅତ୍ୟାଚାର, ଅନ୍ୟାୟ ଓ ବଳ ପ୍ରୟୋଗ ବୃଦ୍ଧି ପାଇବ । କାହାରିଠାରେ ଅଙ୍କୁଶ ରହିବ ନାହିଁ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଗଣତନ୍ତ୍ର ଗୃହର ଚତୁର୍ଥସ୍ତମ୍ଭ ଅର୍ଥାତ୍ ଗଣମାଧ୍ୟମର ବିନା ସ୍ଥିତିରେ ସୁସ୍ଥ ସମାଜ ଗଠନ ଅସମ୍ଭବ ।

ଦଶମାନ ପାଟଣା
ଜେନାପୁର, ଢେଙ୍କାନାଳ– ୭୫୫୦୨୩

